# ଯେଉଁମାନେ ଓଡ଼ିଶାର ବରପୁତ୍ର

ପ୍ରଥମ ଖଣ୍ଡ

ଲେଖକ
ଶ୍ରୀ ନୃସିଂହ ପ୍ରସାଦ ମିଶ୍ର

ପ୍ରକାଶକ



ମନୋରମା ପବ୍ଲିଶର୍ସ
ବାଲୁବଜାର, କଟକ-୨

ପ୍ରଥମ ପ୍ରକାଶ : ୧୯୮୯ ମୂଲ୍ୟ : ୪୦ ଟଙ୍କା ମାତ୍ର

# ମୁଖବନ୍ଧ

"୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା । ଏହା ପୂର୍ବରୁ ଆମ ରାଜ୍ୟର ବହୁତ ଅଞ୍ଚଳ ଅନ୍ୟ ରାଜ୍ୟରେ ଥିଲା । ଅନ୍ୟ ଭାଷା-ଭାଷୀମାନେ ଆମ ଉପରେ ରାଜୁତି କରୁଥିଲେ । ଆମ ଭାଷାର ମାନ ସମ୍ମାନ ମଧ୍ୟ ନଥିଲା ।

ଯେଉଁମାନେ ପ୍ରାଣକୁ ପଣ କରି ଆମ ଜାତି, ଭାଷା ଆଉ ଦେଶକୁ ସ୍ୱତନ୍ତ୍ର କରିଛନ୍ତି ସେମାନେ ସମସ୍ତେ ଓଡ଼ିଶାର ବରପୁତ୍ର । କୋମଳମତି ପାଠକଙ୍କ ପାଇଁ ଏପରି ଦୁଇଟି ପୁସ୍ତକରେ ସମସ୍ତ ବରପୁତ୍ରଙ୍କ ଜୀବନୀ ଲେଖିବାକୁ ଇଚ୍ଛାକରି ଏବେ ପ୍ରଥମ ଖଣ୍ଡଟି ପ୍ରକାଶ ହେବାକୁ ଯାଉଛି । ପାଠକଙ୍କ ଦ୍ୱାରା ଆଦୃତ ହେଲେ ଶ୍ରମ ସାର୍ଥକ ହେଲା ବୋଲି ଜଣାଯିବ ।"

—ଲେଖକ

# ସୂଚୀ

# ଗୌରୀଶଙ୍କର ରାୟ

[ଖ୍ରୀ: ୧୮୩୮ — ଖ୍ରୀ: ୧୯୧୭]

ଖ୍ରୀଷ୍ଟାବ୍ଦ ୧୮୩୮ରେ କଟକ ଜିଲ୍ଲାର ଅସୁରେଶ୍ୱର ପ୍ରଗଣାର ଦୀକ୍ଷିତପଡ଼ାଠାରେ ଗୌରୀଶଙ୍କର ଜନ୍ମଗ୍ରହଣ କରିଥିଲେ । ସେ ସମୟରେ ଇଂରେଜମାନେ ଭାରତ ଶାସନ କରୁଥିଲେ । ଓଡ଼ିଶାକୁ ବଙ୍ଗଦେଶ ସହିତ ମିଶାଇ ଦେବାପାଇଁ ସେତେବେଳକାର ସରକାର ଏକ ଚେଷ୍ଟା କରିଥିଲେ । ଓଡ଼ିଶା ବଙ୍ଗଦେଶ ସହିତ



ଗୌରୀଶଙ୍କର ରାୟ

ମିଶିଗଲେ ଓଡ଼ିଆ ଭାଷା ଲୋପ ପାଇଯିବ— ଏପରି କଥା ଗୌରୀଶଙ୍କର ଜାଣିଥିଲେ । ତେଣୁ ଏପରି ମିଶ୍ରଣ ବିରୁଦ୍ଧରେ ସେ ଯୁଦ୍ଧ କରିଥିଲେ ।

ଗୌରୀଶଙ୍କରଙ୍କ ଉଦ୍ୟମ ଯୋଗୁଁ ଓଡ଼ିଶା ବଙ୍ଗଦେଶ ସହିତ ମିଶିପାରି ନଥିଲା । ଓଡ଼ିଆ ଭାଷାର ପ୍ରଚାର ପାଇଁ ଗୌରୀଶଙ୍କର କାଳେ କାଳେ ମନେରହିଥିବେ । ସେ 'ଉତ୍କଳ-ଦୀପିକା' ନାମକ ଏକ ପ୍ରସିଦ୍ଧ ଓଡ଼ିଆ ପତ୍ରିକାର ସମ୍ପାଦକ ରୂପେ ଘରେ ଘରେ ପରିଚିତ ହୋଇଥିଲେ ।

ସେ ସମୟରେ ଓଡ଼ିଆ ଭାଷାରେ ବହିଟିଏ ଛାପିବା ବହୁତ କଷ୍ଟକର କଥା ଥିଲା । ଗୌରୀଶଙ୍କର ସମବାୟ ରୀତିରେ ଗୋଟିଏ ପ୍ରିଣ୍ଟିଂ କମ୍ପାନୀ ପ୍ରତିଷ୍ଠା କରିଥିଲେ । ଏହି କମ୍ପାନୀର ସେ ଆଜୀବନ ପରିଚାଳକ ରହିଥିଲେ ।

ଗୌରୀଶଙ୍କର ସର୍ବପ୍ରଥମେ ପୁରୀ-ପ୍ରକାଶକ କମ୍ପାନୀ ନାମରେ ଗୋଟିଏ ଅନୁଷ୍ଠାନ କରିଥିଲେ । ଏହି ଅନୁଷ୍ଠାନ

ମାଧ୍ୟମରେ ଓଡ଼ିଆ ଭାଷାରେ ସବୁପ୍ରକାର ପୁରାଣ ପ୍ରକାଶ ପାଇଥିଲା । ଗୌରୀଶଙ୍କର ହିଁ ସର୍ବପ୍ରଥମ 'ଓଡ଼ିଆ ପାଞ୍ଜି' ପ୍ରକାଶ କରି ଥିଲେ ।

ଆଜି କଟକରେ ଯେଉଁ ଟାଉନହଲକୁ ଆମେ ଦେଖୁଛେ ତାହା ହେଉଛି ଗୌରୀଶଙ୍କରଙ୍କ କୀର୍ତ୍ତି । ଆମ ଭାଷା ଓ ଜାତିର ସ୍ୱାଧୀନତା ପାଇଁ ଗୌରୀଶଙ୍କରଙ୍କ ଉଦ୍ୟମ ଚିରକାଲ ତାଙ୍କୁ ଅମର କରି ରଖିଥିବ । ଗୌରୀଶଙ୍କର ପ୍ରକୃତରେ ଓଡ଼ିଶାର ଜଣେ ବରପୁତ୍ର । ୧୯୧୭ରେ ଗୌରୀଶଙ୍କରଙ୍କ ମୃତ୍ୟୁ ହୋଇଥିଲା ।

## ମଧୁସୂଦନ ଦାସ

( ଖ୍ରୀ ୧୮୪୮ ରୁ ଖ୍ରୀ ୧୯୩୪ )

କଟକ ଜିଲ୍ଲାର ସତ୍ୟଭାମାପୁର ଗ୍ରାମରେ ୧୮୪୮ ମସିହାରେ ମଧୁସୂଦନ ଜନ୍ମ ହୋଇଥିଲେ । ତାଙ୍କ ପିତାଙ୍କ ନାମ ଚୌଧୁରୀ ରଘୁନାଥ ଦାସ ଓ ମାତାଙ୍କ ନାମ ସରଳା ଦେବୀ ।

ମଧୁସୂଦନ ସତ୍ୟଭାମା ପୁରରେ ଚାଟଶାଳୀ ପାଠ ଶେଷ କରିବା ପରେ ଇଂରେଜୀ ପଢ଼ିବା ପାଇଁ କଟକ ଆସିଥିଲେ । ଷୋହଳ ବର୍ଷ ବୟସରେ ସେ ସେତେବେଳକାର ଏଣ୍ଟ୍ରାନ୍‌ସ ପରୀକ୍ଷା ପାଶ୍ କରିଥିଲେ । ସେ ସମୟରେ ଅଧିକ ପାଠ ପଢ଼ିବାକୁ ହେଲେ କଲିକତା ଯିବାକୁ ହେଉଥିଲା । ଆଉ ରେଲ-ମଟର ଯୋଗେ କଲିକତା ଯିବା ସୁବିଧା ନ ଥିଲା । ତେଣୁ ମଧୁସୂଦନଙ୍କ ପିତା ତାଙ୍କୁ କଟକ କଚେରୀରେ କିରାଣୀ କରିଦେବା ପାଇଁ ଇଚ୍ଛା କରିଥିଲେ ।

ହେଲେ, ମଧୁସୂଦନ ଥିଲେ ଅସାଧାରଣ ପ୍ରତିଭାର ଅଧିକାରୀ । ଅଧିକରୁ ଅଧିକ ପଢ଼ିବା, ସବୁକଥା ଜାଣିବା ପାଇଁ ତାଙ୍କର



ଖୁବ୍ ଆଗ୍ରହ ଥିଲା । ତେଣୁ ସେ ପାଦରେ ଚାଲି ଚାଲି କଲିକତା ଯାଇଥିଲେ ଉଚ୍ଚତର ଶିକ୍ଷା ପାଇବା ପାଇଁ ।

କଲିକତାରେ ପହଞ୍ଚିବା ପରେ ସେ ଗୋଟିଏ ଖ୍ରୀଷ୍ଟାନ ପାଦ୍ରୀ ପରିଚାଳିତ ଛାତ୍ରାବାସରେ ରହୁଥିଲେ । ଏକାକୀ କଲିକତାରେ ରହି ସେ ଏମ୍.ଏ. ବି ଏଲ୍. ପାଶ କଲେ ।

ବହୁଦିନ ଧରି ମଧୁସୂଦନ ଖ୍ରୀଷ୍ଟାନ୍ ପରିଚାଳିତ ଛାତ୍ରାବାସରେ ରହିଲେ । ଖ୍ରୀଷ୍ଟାନ୍‌ମାନଙ୍କ ସଂପର୍କରେ ସବୁବେଳେ ଆସିଲେ । ଆଉ ଖ୍ରୀଷ୍ଟାନ ଧର୍ମ ପୁସ୍ତକ ପଢ଼ିବାକୁ ପାଇଲେ । ଫଳରେ ହିନ୍ଦୁ ମଧୁସୂଦନଙ୍କ ମନ ଖ୍ରୀଷ୍ଟାନ ଧର୍ମପ୍ରତି ଢଳିପଡ଼ିଲା । ସେ ଶେଷରେ ଖ୍ରୀଷ୍ଟାନ୍ ହୋଇଗଲେ ।

ଛାତ୍ରାବାସରେ ମଧୁସୂଦନ ରହୁଥିବା ସମୟରେ ଜଣେ ବଙ୍ଗାଳୀ ବ୍ରାହ୍ମଣ ମଧ୍ୟ ତାଙ୍କ ସହିତ ରହୁଥିଲେ । ମଧୁସୂଦନ ଯେଉଁଦିନ ଖ୍ରୀଷ୍ଟାନ୍ ଧର୍ମ ଗ୍ରହଣକଲେ ସେହିଦିନ ଏହି ବଙ୍ଗାଳୀ ଭଦ୍ରଲୋକ ମଧ୍ୟ ଖ୍ରୀଷ୍ଟାନ୍ ହୋଇଥିଲେ । ଏହି ବଙ୍ଗାଳୀ ଭଦ୍ରଲୋକଙ୍କ ଝିଅର ନାମ ଶୈଳବାଳା । ମଧୁସୂଦନ ଶୈଳବାଳାଙ୍କୁ ଝିଅରୂପେ ପାଳିଥିଲେ । ଆଜି କଟକରେ ଯେଉଁ ସରକାରୀ ମହିଳା କଲେଜ ଅଛି ତାହା ଶୈଳବାଳାଙ୍କ ନାମରେ ନାମିତ ।

ମଧୁସୂଦନ ଖ୍ରୀଷ୍ଟିୟାନ୍ ହୋଇଯିବାରୁ ତାଙ୍କ ପିତା ତାଙ୍କ ଉପରେ ଖୁବ୍ ରାଗିଥିଲେ । ତେଣୁ ଆଉ ତାଙ୍କୁ ସମ୍ପତ୍ତି ଦେବାପାଇଁ ମନାକରିଦେଇଥିଲେ । ଏଥର ମଧୁସୂଦନଙ୍କୁ ଅର୍ଥାଭାବ ହେଲା । ହେଲେ ଯୁବକ ମଧୁସୂଦନ ଥିଲେ ଅତି ସ୍ୱାଧୀନଚେତା ଆଉ ଜିଦ୍‌ଖୋର । ସେ ପିତାଙ୍କଠାରୁ ପଇସାଟିଏ ସୁଦ୍ଧା ଆଶା ନକରି ନିଜେ ଟିଉସନ କରିବା ଆରମ୍ଭ କରିଦେଲେ ।

ଆଜି ବଙ୍ଗ-ପ୍ରଦୀପ ନାମରେ ପରିଚିତ ହେଉଥିବା ସାର ଆଶୁତୋଷ ମୁଖାର୍ଜିଙ୍କର ମଧୁସୂଦନ ଥିଲେ ଗୃହ-ଶିକ୍ଷକ । ମଧୁସୂଦନ ଥିଲେ ଉଚ୍ଚକୋଟୀର ଆଦର୍ଶବାଦୀ । ସେ ସେତେବେଳେ ଇଂରାଜୀ ଭାଷାରେ ଗୋଟିଏ ବ୍ୟାକରଣ ପୁସ୍ତକ ରଚନା କରିଥିଲେ । ଏହି ବ୍ୟାକରଣ ପୁସ୍ତକ ଉଚ୍ଚ-ଶିକ୍ଷିତ ବଙ୍ଗାଳୀ ମାନଙ୍କ ଜ୍ଞାନଗର୍ବକୁ ସେ ସମୟରେ ଟଳେଇ ପକାଇ ଦେଇଥିଲା । ମଧୁସୂଦନ ବହି ବିକ୍ରୀ ବାବଦରେ ରାଜସ୍ୱ ରୂପେ ପ୍ରତିବର୍ଷ ଦଶହଜାର ଟଙ୍କା ପାଉଥିଲେ ।

ଏ ଥିଲା ମଧୁସୂଦନଙ୍କ ଛାତ୍ର ଜୀବନ ସମୟରେ କଥା । କାଳେ କାଳେ ଉଦ୍ୟମ ଆଉ ଉଦ୍ୟୋଗ ମଣିଷକୁ ମଣିଷ ଭଳି କରିଥାଏ, ମହାପୁରୁଷ କରିଥାଏ ।

ମଧୁସୂଦନ ଓକିଲାତି ପାଶ କରିବାପରେ

ଆଇନ ବ୍ୟବସାୟ କରିବାପାଇଁ ଇଚ୍ଛାକଲେ । ସେ କଲିକତା ହାଇକୋର୍ଟର ଓଡ଼ିଆ ଅନୁବାଦକରୂପେ ପ୍ରଥମେ କାମ ଆରମ୍ଭ କରିଥିଲେ ।

ସେ ସମୟରେ ଏପରି ଗୋଟିଏ ଘଟଣା ଘଟିଲା—ଯାହା ମଧୁସୂଦନଙ୍କୁ ହଠାତ୍ ଓଡ଼ିଶା ପ୍ରସିଦ୍ଧ କରିଦେଲା । ଏବଂ ଏହା ଫଳରେ ହିଁ ମଧୁସୂଦନ ସାରା ଭାରତରେ ପରିଚିତ ହୋଇଗଲେ ।

ହିନ୍ଦୁମାନଙ୍କ ପ୍ରସିଦ୍ଧ ମନ୍ଦିର ହେଉଛି ପୁରୀର ଶ୍ରୀ ଜଗନ୍ନାଥ ମନ୍ଦିର । ମନ୍ଦିରର ଅଚଳାଚଳ ସମ୍ପତ୍ତି ଥିଲା । ଗଜପତି ମହାରାଜ କେଉଁ ପୁରାଣ ଯୁଗରୁ ମନ୍ଦିରର ପରିଚାଳନା କରି ଆସୁଥିଲେ । ଗଜପତି ମହାରାଜଙ୍କୁ ଓଡ଼ିଆମାନେ ଚଳନ୍ତି ମହାପ୍ରଭୁ ଜଗନ୍ନାଥ ବୋଲି ମନେକରନ୍ତି ।

ଇଂରେଜ ସରକାରଙ୍କ ଲୋଲୁପ ଦୃଷ୍ଟି ପୁରୀ ଶ୍ରୀଜଗନ୍ନାଥ ମନ୍ଦିରର ସମ୍ପତ୍ତି ଉପରେ ପଡ଼ିଲା । ସେମାନେ ଚକ୍ରାନ୍ତ କଲେ । ପୁରୀ ମହାରାଜଙ୍କୁ ବନ୍ଦୀକରି କଳାପାଣିକୁ ପଠାଇ ଦେଲେ । ଗଜପତି ମହାରାଜଙ୍କୁ ଦ୍ୱୀପାନ୍ତର ହୋଇଗଲା । ଏଥର ଜଗନ୍ନାଥ ମନ୍ଦିରର ପରିଚାଳନାରେ ବିଭ୍ରାଟ ହେଲା । ବ୍ରିଟିଶ ସରକାର ମନ୍ଦିରକୁ ଶୃଙ୍ଖଳାର ସହିତ



ପରିଚାଳନା କରିବା ପାଇଁ କହି ଦେଉଳକୁ ନିଜ ଅକ୍ତିଆରକୁ ନେବା ପାଇଁ ଚେଷ୍ଟା କଲେ ।

ଇଂରେଜ ସରକାରଙ୍କ ଏପରି ଭିତର କଥା କେହି ନ ଜାଣିବା ପୂର୍ବରୁ ଚତୁର ମଧୁସୂଦନ ଜାଣିଗଲେ । ଇଂରେଜ ସରକାର ଜଗନ୍ନାଥ ମନ୍ଦିରକୁ ନେଇଗଲେ ହିନ୍ଦୁ ସମାଜ ପ୍ରତି ଏହା ଘୋର ଅପମାନ ହେବ । ଏହା ସେ କଦାପି ବରଦାସ୍ତ କରିପାରିବେ ନାହିଁ । ସେ ହେଉଛନ୍ତି ବରେଣ୍ୟ ଉତ୍କଳପୁତ୍ର । ତେଣୁ ସେ ଇଂରେଜ ସରକାରଙ୍କ ବିରୁଦ୍ଧରେ ନିଜେ ଲଢ଼ିବେ ବୋଲି ଠିକ୍ କଲେ । ୧୮୮୭ ମସିହାରେ ଖ୍ରୀଷ୍ଟାନ୍-ଇଂରେଜ ସରକାରଙ୍କ ବିରୁଦ୍ଧରେ କଲିକତା ହାଇକୋର୍ଟରେ ମକଦ୍ଦମା ଲଢ଼ିଲେ । ଶେଷରେ ସେ ଆମ ଗଜପତି ମହାରାଜାଙ୍କୁ ଜୟୀ କରିଦେଲେ ।

ସେତେବେଳେ କଟକରେ ମଧ୍ୟ ଅଦାଲତ ଥିଲା । କିନ୍ତୁ ଓକିଲମାନେ ଥିଲେ ବଙ୍ଗାଳୀ । ଏହି ଓକିଲମାନେ ନାନା ଆଳରେ ଓଡ଼ିଆଙ୍କୁ ଠକୁଥିଲେ, ସମ୍ପତ୍ତି ଲୁଣ୍ଠନ କରି ନେଉଥିଲେ । ମଧୁବାବୁଙ୍କୁ ବହୁ ବିଶିଷ୍ଟ ଓଡ଼ିଆ ଅନୁରୋଧ କଲେ । ଏଥର ମଧୁସୂଦନ କଟକରେ ରହି, ଓକିଲାତି କରିବା ପାଇଁ ସ୍ଥିର କଲେ ।


ଉତ୍କଳପ୍ରସିଦ୍ଧ ସର୍ବମାନ୍ୟ ନେତା ମଧୁସୂଦନ ଦାସ

ଆଜିକାଲି ପ୍ରତ୍ୟେକ ଲୋକ ନିଜର ସ୍ୱାର୍ଥ ପାଇଁ ବହୁ ପ୍ରକାର ଅନ୍ୟାୟ କରୁଛନ୍ତି । ନ୍ୟାୟ ଓ ଆଇନ୍ ନାମରେ ସେତେବେଳେ ସ୍ୱାର୍ଥପର ଓକିଲମାନେ ବହୁତ ଅନ୍ୟାୟ କରୁଥିଲେ । ସେମାନେ ଓଡ଼ିଆଙ୍କୁ ମେଣ୍ଢାଭଳି ବ୍ୟବହାର କରୁଥିଲେ, ଘୃଣା କରୁଥିଲେ । ମଧୁବାବୁ କଟକରେ ଓକିଲାତି କଲେ ଏହି ସ୍ୱାର୍ଥପର ଓକିଲ ଦଳ ଧରାପଡ଼ିଯିବେ । ଏପରି ଭୟ କରି ସେତେବେଳେ ଓକିଲମାନେ ଓକିଲାତି ଖାନାରେ ମଧୁବାବୁଙ୍କୁ ବସିବାପାଇଁ ଜାଗାଟିଏ ସୁଦ୍ଧା ଦେଇ ନ ଥିଲେ ।

କିନ୍ତୁ ମଧୁସୂଦନ ଥିଲେ ପ୍ରତିଭାବାନ । ତାଙ୍କର ତୀବ୍ର ଓଡ଼ିଆ-ପ୍ରୀତି ଭାବ, ତୀବ୍ର ଜାତୀୟତା-ଭାବ, ତାଙ୍କର ମନୀଷା ତାଙ୍କୁ ନାନା ବିରୋଧ ସତ୍ତ୍ୱେ ପ୍ରତିଷ୍ଠିତ କରିଦେଇଥିଲା । ମଧୁବାବୁ ଥିଲେ ଖୁବ୍ ପରାକ୍ରମୀ ଓ ତାଙ୍କର ତ୍ୟାଗ ଥିଲା ଅଦ୍ଭୁତ ।

ମଧୁସୂଦନ ଅଳ୍ପ ଦିନ ଭିତରେ ଓକିଲାତିରେ ଖୁବ୍ ସୁନାମ ଅର୍ଜନ କଲେ । ଓଡ଼ିଶାର ବଡ଼ ବଡ଼ ମହାରାଜା ଓ ଜମିଦାରମାନେ ନିଜ ସମ୍ପତ୍ତିର ସୁରକ୍ଷା ପାଇଁ ମଧୁବାବୁଙ୍କୁ ଓକିଲରୂପେ ରଖିଥିଲେ । ସେତେବେଳେ ମଧୁବାବୁ ସେମାନଙ୍କଠାରୁ

ଲକ୍ଷ ଲକ୍ଷ ଟଙ୍କା ପାଉଥିଲେ । ସେ ବିରାଟ ସୁନ୍ଦର ଘର ତିଆରି କରି ବହୁ ବିଶିଷ୍ଟ ଲୋକଙ୍କୁ ଆତିଥ୍ୟ ଦେଉଥିଲେ । ତାଙ୍କର ଅତିଥିମାନେ ତାଙ୍କ ନିଜ ଘରେ ଖୁବ୍ ମଉଜ ମଜଲିସ୍ କରୁଥିଲେ । ମଧୁବାବୁ ନିଜେ ଏହି ମଉଜର ସମସ୍ତ ଆୟୋଜନ କରୁଥିଲେ ସୁଦ୍ଧା ନିଜେ ମଉଜରେ ମଜ୍ଜି ଯାଉ ନଥିଲେ । କାରଣ ମଧୁବାବୁ ଥିଲେ ଅତି ସରଳ । ତାଙ୍କ ବ୍ୟବହାର ଥିଲା ସରଳ । ସେ ଥିଲେ ଅତି ଅଳ୍ପାହାରୀ ଓ ସରଳ ହାରୀ ? ମଧୁବାବୁ ଥିଲେ ଯୋଗୀ- ପ୍ରାଣ ।

ଖୁବ୍ ଭଲ ଓକିଲାତି କରୁଥିବା ସମୟରେ ମଧୁବାବୁ ଜାତୀୟ ରାଜନୀତିରେ ଯୋଗଦେଲେ । ମଧୁବାବୁ ବକ୍ତୃତା ଦେଇ ଲୋକଙ୍କୁ ଉତ୍ତେଜିତ ତଥା ପ୍ରଭାବିତ କରିଦେଇଥିଲେ । ସେ ଥିଲେ ଅତି ବୁଦ୍ଧିମାନ ଏବଂ ବାଦାନୁବାଦ- ବିଚକ୍ଷଣ ।

ସେତେବେଳେ ଆମ ଓଡ଼ିଶା ବଙ୍ଗ ସହିତ ମିଶି ରହିଥିଲା । ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ କରିବା ପାଇଁ, ବଙ୍ଗଦେଶରୁ ଛଡ଼ାଇ ଆଣିବା ପାଇଁ, ମଧୁବାବୁ ସର୍ବପ୍ରଥମେ କାମ ଆରମ୍ଭ କରିଥିଲେ । ସେ ଜାତୀୟ କଂଗ୍ରେସର ସଭ୍ୟ ହୋଇଥିଲେ । ଓଡ଼ିଶାକୁ ସ୍ୱତନ୍ତ୍ର ପ୍ରଦେଶ କରିବା ପାଇଁ ସେ କଂଗ୍ରେସର ସାହାଯ୍ୟ ଲୋଡ଼ିଥିଲେ । ହେଲେ ବଙ୍ଗାଳୀଙ୍କ ଚକ୍ରାନ୍ତ ଯୋଗୁଁ କଂଗ୍ରେସ ମଧୁବାବୁଙ୍କ କଥାକୁ କାନ ଦେଲେନାହିଁ । ମଧୁବାବୁ ତେଣୁ ୧୯୦୩ରେ କଂଗ୍ରେସ ଛାଡ଼ିଦେଲେ । ସେ ସେହିବର୍ଷ ଉତ୍କଳ-ସମ୍ମିଳନୀ ଆରମ୍ଭ କରିଥିଲେ । ଆଜି ଓଡ଼ିଶା ଏକ ସ୍ୱତନ୍ତ୍ର ପ୍ରଦେଶ ହୋଇପାରିଛି ଏହି ମଧୁବାବୁଙ୍କ ଯୋଗୁଁ ।

ମଧୁବାବୁ ଆମ ଓଡ଼ିଆଙ୍କର ସର୍ବାଙ୍ଗୀନ ଉନ୍ନତି ଚାହିଁ ଥିଲେ । ଓଡ଼ିଆ ଦରିଦ୍ର ଜାତି । ହେଲେ ଓଡ଼ିଆଙ୍କ ଧନ ଅଛି ତାଙ୍କ ଆଙ୍ଗୁଠିରେ, ହାତରେ । ପ୍ରସିଦ୍ଧ ଶିଳ୍ପକଳା ନିପୁଣ ଓଡ଼ିଆ ଜାତି ଶିଳ୍ପକର୍ମ ପାଇଁ ସୁଯୋଗ ନପାଇ ଦରିଦ୍ର ହୋଇଛି । ଏପରି କଥା ଜାଣି ମଧୁବାବୁ ବସ୍ତ୍ରଶିଳ୍ପ ଓ ତାରକସି ଶିଳ୍ପ, କାଠ, ଚମଡ଼ା ଓ ଶିଙ୍ଗ କାମର ପ୍ରସାର କରାଇବାରେ ଲାଗିପଡ଼ିଲେ । ଓଡ଼ିଶା ଟେନେରୀ ନାମରେ ଗୋଟିଏ ପ୍ରସିଦ୍ଧ ଚମଡ଼ା କାରଖାନା କଲେ । ଏଥି ନିମନ୍ତେ ସେ ପ୍ରଚୁର ଅର୍ଥ ଖର୍ଚ୍ଚ କଲେ । ମାତ୍ର ଏକା ମଧୁସୂଦନ ଅନେକ କାମ ନିଜେ ତଦାରଖ କରିବା ତାଙ୍କ ପକ୍ଷେ ଅସମ୍ଭବ ହୋଇପଡ଼ିଲା । ବିଶ୍ୱସ୍ତ ପରିଚାଳକ ଅଭାବରେ ତାଙ୍କ ଦ୍ୱାରା ପ୍ରତିଷ୍ଠିତ ଶିଳ୍ପ ଅନୁଷ୍ଠାନ ଗୁଡ଼ିକ ଋଣଗ୍ରସ୍ତ ହୋଇଗଲା ।



ପରିଣତବୟସରେ କୁଳବୃଦ୍ଧ ମଧୁବାବୁ

ମଧୁବାବୁ ୧୯୧୯ ପରେ ପରେ ବିହାର-ଓଡ଼ିଶା ମନ୍ତ୍ରୀ ପରିଷଦର ପ୍ରଥମ ଓଡ଼ିଆ ମନ୍ତ୍ରୀ ହେଲେ । ସେ ସେତେବେଳେ ମ୍ୟୁନିସିପାଲିଟି ଓ ସ୍ଥାନୀୟ ସ୍ୱାୟତ୍ତଶାସନ ଆଇନ୍ ନାମକ ଦୁଇଟି ପ୍ରସିଦ୍ଧ ବହି ଲେଖିଥିଲେ । ମଧୁସୂଦନ କିନ୍ତୁ ବିନାବେତନରେ ମନ୍ତ୍ରୀ ହେବାକୁ ଚାହିଁଥିଲେ । ସରକାର ଏଥିରେ ରାଜି ନ ହେବାରୁ ସେ ମନ୍ତ୍ରୀପଦ ମଧ୍ୟ ଛାଡ଼ି ଦେଇଥିଲେ ।

ମଧୁବାବୁ ଥିଲେ ବୀରଙ୍କ ପରି ଲଢ଼ୁଆ । ସେ ମାସିକ ପାଞ୍ଚ ହଜାରଟଙ୍କା ବେତନ ମିଳୁଥିବା ମନ୍ତ୍ରୀପଦ ଛାଡ଼ିବା ସମୟରେ ଋଣଗ୍ରସ୍ତ ଥିଲେ । ପରିଶେଷରେ ତାଙ୍କର କାରଖାନା, ଏପରିକି ନିଜର ରାଜପ୍ରାସାଦ ଭଳି ଘର ନିଲାମ ହୋଇଗଲା । ସେ ନିଜଘରେ ଶେଷ ସମୟ ପର୍ଯ୍ୟନ୍ତ ଭଡ଼ାରେ ରହି ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ପାଇଁ ଲାଗିପଡ଼ିଥିଲେ । ସେ ରାଜା ନ ଥିଲେ । ରାଜାମାନେ ମହକେଲ ଭାବରେ ତାଙ୍କ ପାଖକୁ ଆସୁଥିଲେ । ସେମାନେ ମଧୁବାବୁଙ୍କୁ ପ୍ରଚୁର ପଇସା ଦେଉଥିଲେ । ଆଉ ମଧୁବାବୁ ଦାନୀକର୍ଣ୍ଣଙ୍କ ଭଳି ତାହା ଦୁଃସ୍ଥ ଓ ଗରିବଙ୍କୁ ବାଣ୍ଟି ଦେଉଥିଲେ । ଲୋକେ ତେଣୁ ତାଙ୍କୁ ମୁକୁଟହୀନ ରାଜାବୋଲି କହୁଥିଲେ ।

ମଧୁବାବୁ ହିଁ ପ୍ରଥମ ଲୋକ ଯେ କି ଜମିଦାରୀ ଉଠାଇ ଦେବାପାଇଁ ସରକାରଙ୍କୁ ସର୍ବପ୍ରଥମେ ପ୍ରସ୍ତାବ ଦେଇଥିଲେ । ମଧୁବାବୁ ଜୀବିତ ଥିବା ସମୟତକ ଓଡ଼ିଆମାନେ ନିର୍ଭୟ ଥିଲେ । ସେ ୧୯୩୪ରେ ଦେହ ତ୍ୟାଗ କଲେ । ସେତେବେଳେ ଓଡ଼ିଆ ଜାତି ନିଜକୁ ଅସହାୟ ବୋଧ କରିଥିଲେ । ୧୯୩୬ରେ ଓଡ଼ିଶା ସ୍ୱତନ୍ତ୍ରରାଜ୍ୟ ହେଲା ।

ମଧୁବାବୁ ଥିଲେ ବୈଷ୍ଣବ । ସେ ହେଲେ ଖ୍ରୀଷ୍ଟାନ୍ । ମାତ୍ର ଚିରକାଳ ରହିଥିଲେ ଓଡ଼ିଆ । ସେ ଥିଲେ ଓଡ଼ିଶାର ଗୌରବ, ସେ ହିଁ ଓଡ଼ିଆ ଜାତିର କୁଳବୃଦ୍ଧ, ସେ ହିଁ ଓଡ଼ିଶାର ଶ୍ରେଷ୍ଠତମ ବରପୁତ୍ର ।

# ସର୍‌ବାସୁଦେବ ସୁଢ଼ଳଦେବ

[ ଖ୍ରୀ: ୧୮୫୦-ଖ୍ରୀ: ୧୯୦୩ ]

ଗୋଟିଏ ରାଷ୍ଟ୍ର ସ୍ୱାଧୀନ ହେଲେ ଯାହା ଯାହା ଜନକଲ୍ୟାଣ କାର୍ଯ୍ୟ କରିବା କଥା, ଭାରତ ସ୍ୱାଧୀନ ହେବାର ୫୦ ବର୍ଷ ଆଗରୁ ସେ ସମସ୍ତ କାର୍ଯ୍ୟ ଆରମ୍ଭ କରିଥିଲେ ସର ବାସୁଦେବ ସୁଢ଼ଳ ଦେବ ।

ବାସୁଦେବ ସୁଢ଼ଳଦେବ ଖ୍ରୀ ୧୮୫୦ରେ ଜନ୍ମ ଗ୍ରହଣ କରିଥିଲେ । ସେ ବାମଣ୍ଡାର ରାଜା ହେବାମାତ୍ରେ ଆଧୁନିକ ରାଜ୍ୟ-ଶାସନ ପ୍ରଣାଳୀ ପରିବର୍ତ୍ତନ କରିଥିଲେ । ଓଡ଼ିଆ ଭାଷାରେ ଅଗାଧ ପାଣ୍ଡିତ୍ୟ ଥିବା ରାଜା ବାସୁଦେବ ସୁଢ଼ଳ ଦେବ ଇଂରାଜୀ ଭାଷା ଆଦୌ ଜାଣିନଥିଲେ । ସେ ହିଁ ଉତ୍କଳର ନବ ଜାଗରଣ ଆଣିଥିଲେ ।

ଓଡ଼ିଶାରେ ଓଡ଼ିଆ କଚେରୀ ଭାଷା ହେବା ପଛରେ ବାସୁଦେବ ସୁଢ଼ଳ ଦେବଙ୍କ ତ୍ୟାଗ ବହୁତ ବେଶୀ । ସେ ରାଜା ହେବାକ୍ଷଣି ପ୍ରଜାଙ୍କ ହିତ ନିମନ୍ତେ ଲାଗିପଡ଼ିଥିଲେ । ଓଡ଼ିଶାର ବାମଣ୍ଡାରେ ହିଁ ସର୍ବପ୍ରଥମ ଜଳ-ବିଦ୍ୟୁତକୁ କାମରେ ଲଗାହୋଇଥିଲା । ଭାରତବର୍ଷର ଦୀର୍ଘତମ ଟେଲିଫୋନ୍ ଲାଇନ୍ ତିଆରି କରାଇ ସେ ପ୍ରଥମ ଟେଲିଫୋନ୍ ବ୍ୟବହାର କରିଥିଲେ ଓଡ଼ିଶାରେ । ସେ ମଧ୍ୟ ପ୍ରଥମ ଓଡ଼ିଆ ଯେ କି ମଟରକାର ବ୍ୟବହାର କରିଥିଲେ ।

ବାସୁଦେବ ସୁଢ଼ଳ ଦେବ ପ୍ରଜାଙ୍କ ହିତ ନିମନ୍ତେ କୃଷିର ଓ ଗୋ-ଜାତିର ଉନ୍ନତି କରିଥିଲେ । ନିଶା-ନିବାରଣ କରିବା ସହିତ ବେଠି ପ୍ରଥା ଲୋପ ଆଦି ଅନେକ ପ୍ରଜା



ସୁଢ଼ଳ ଦେବ

ହିତକର କାମ କରିଥିଲେ । ସ୍ତ୍ରୀ-ଶିକ୍ଷାର ପ୍ରସାର ନିମନ୍ତେ ସେ ସର୍ବପ୍ରଥମେ ପ୍ରଚ୍ଚେଷ୍ଟା କରିଥିଲେ । ଏବଂ ନିଜ ରାଜ୍ୟରେ ବାଳିକା ବିଦ୍ୟାଳୟ ସ୍ଥାପନ କରିଥିଲେ ।

ବାସୁଦେବ ସୁଢଳ ଦେବଙ୍କ ପାଣ୍ଡିତ୍ୟ ଓ ଲୋକହିତକର କାର୍ଯ୍ୟ ଦେଖି ବ୍ରିଟିଶ ସରକାର ତାଙ୍କୁ ସର ଓ କେ.ସି.ଆଇ.ଇ ଉପାଧି ଦେଇଥିଲେ ।

ବାସୁଦେବ ସୁଢଳଦେବଙ୍କ ଯୋଗୁ ସମ୍ବଲପୁର ମଧ୍ୟପ୍ରଦେଶରୁ ଆନୀତ ହୋଇ ଓଡ଼ିଶାରେ ମିଶିପାରିଛି । ସୁଢ଼ଳଦେବ ଅକାଳରେ ୧୯୦୩ ମସିହାରେ ବାତ ଓ ବହୁମୂତ୍ର ରୋଗରେ ପଡ଼ି ଦେହତ୍ୟାଗ କରିଥିଲେ ।



ଗୋବିନ୍ଦ ରଥ

## ଗୋବିନ୍ଦ ରଥ

(ଖ୍ରୀ: ୧୮୫୧—ଖ୍ରୀ:୧୯୧୮)

ଗୋବିନ୍ଦ ରଥ ବାଙ୍କୀର ପଦ୍ମନାଭପୁରରେ ୧୮୫୧ ମସିହାରେ ଜନ୍ମ ହୋଇଥିଲେ । ସେ ପିଲାଟି ଦିନରୁ ଖୁବ୍ ଲୋକପ୍ରିୟ ହୋଇଥିଲେ । ସେତେବେଳେ ଇଂରେଜ ସାହେବ କି ଇଂରେଜଙ୍କ ପଦଗୋଡ଼ାଣିଆ ଭାରତୀୟଙ୍କୁ ଦେଖିବାକ୍ଷଣି ରଥେ ନାନାପ୍ରକାର ଭାବରେ ଅପଦସ୍ଥ କରୁଥିଲେ । ସେ ଥିଲେ ଅତି ନିର୍ଭୀକ । ନାନାପ୍ରକାର ହାସ୍ୟରସାତ୍ମକ ବ୍ୟଙ୍ଗ ସାହିତ୍ୟ ଲେଖି ସେ ଇଂରେଜଙ୍କୁ କଟୁ ସମାଲୋଚନା କରୁଥିଲେ ।

ଗୋବିନ୍ଦ ରଥ ସର୍ବପ୍ରଥମ ବର୍ଣ୍ଣବୋଧ ଲେଖିଥିଲେ, ଯାହାର ନାମ ହେଉଛି 'ବର୍ଣ୍ଣବୋଧକ' । ବହୁବର୍ଷ ଧରି ଏହି ବର୍ଣ୍ଣବୋଧକ ପାଠ୍ୟପୁସ୍ତକ ରୂପେ ବ୍ୟବହୃତ ହେଉଥିଲା । ସେ ୧୯୧୮ ମସିହାରେ ଦେହତ୍ୟାଗ କଲେ ।

# ପ୍ୟାରୀମୋହନ ଆଚାର୍ଯ୍ୟ

(ଖ୍ରୀ: ୧୮୫୨–ଖ୍ରୀ: ୧୮୮୧)

ପ୍ୟାରୀମୋହନ ହେଉଛନ୍ତି କଟକରେ ଥିବା ପ୍ୟାରୀମୋହନ ଏକାଡ଼େମୀର ପ୍ରତିଷ୍ଠାତା । ସେ ଜଣେ ସ୍ୱଦେଶପ୍ରେମୀ ଭାବେ ଖ୍ୟାତ ।

୧୮୫୨ ଖ୍ରୀଷ୍ଟାବ୍ଦରେ ପ୍ୟାରୀମୋହନ କଟକ ଜିଲ୍ଲାର କୁଆଁପାଳ ଗ୍ରାମରେ ଜନ୍ମଗ୍ରହଣ କରିଥିଲେ । ଚାଟଶାଳୀ ପାଠ ଗ୍ରାମରେ ଶେଷ କରିବାପରେ ସେ କଟକର କଲେଜିଏଟ୍ ସ୍କୁଲରେ ପାଠ ପଢ଼ିଥିଲେ ।

ପ୍ୟାରୀମୋହନ ପିଲାଟି ଦିନରୁ ଇଂରେଜ ସରକାରଙ୍କୁ ଘୃଣା କରୁଥିଲେ । ସେ ଏଫ୍.ଏ. ପାଠ ପଢ଼ୁଥିବାବେଳେ ଇଂରେଜଙ୍କୁ ପରିହାସ କରି "ଘୋଡାର ନିବେଦନ" ନାମରେ ଗୋଟିଏ ନିବନ୍ଧ ଲେଖିଥିଲେ । ସେହି ନିବନ୍ଧରେ ସେତେବେଳେ ବ୍ରିଟିଶ୍ ଶାସକଙ୍କୁ ଖୁବ୍ ଅପମାନିତ କରାହୋଇଥିଲା । ଏଥିରେ ବ୍ରିଟିଶ ସରକାର ରାଗିଲେ । ପ୍ୟାରୀମୋହନଙ୍କୁ କ୍ଷମା ମାଗିବାପାଇଁ କୁହାହେଲା ଏବଂ କୁହାହେଲା ଯେ, ଯଦି ସେ କ୍ଷମା ନ'ମାଗନ୍ତି ତେବେ ତାଙ୍କୁ ସ୍କୁଲରୁ ବାହାର କରିଦିଆଯିବ ।

ସେତେବେଳେ ଇଂରେଜ ସରକାରଙ୍କୁ ସବୁ ଲୋକେ ଭୀଷଣ ଡରୁଥିଲେ । ହେଲେ ପ୍ୟାରୀମୋହନ ଥିଲେ ନିର୍ଭୀକ । ସେ ଭାଙ୍ଗିଯିବେ ପଛେ ନଇଁବେ ନାହିଁ ବୋଲି କହିଲେ । ତାଙ୍କୁ ତେଣୁ ସ୍କୁଲରୁ ବହିଷ୍କାର କରାଗଲା ।



ପ୍ୟାରୀମୋହନ ଆଚାର୍ଯ୍ୟ

ସେ ସମୟରେ ବାଙ୍କୀର ଗୋବିନ୍ଦ ରଥ ନାମରେ ଜଣେ ପଣ୍ଡିତ ମଧ୍ୟ ଇଂରେଜଙ୍କୁ କଟୁ ସମାଲୋଚନା କରୁଥିଲେ । ପ୍ୟାରୀମୋହନ ଗୋବିନ୍ଦ ରଥଙ୍କ ସମ୍ପର୍କରେ ଆସି ଅଧିକ ନିର୍ଭୀକ ହୋଇଗଲେ । ସେ ସବୁବେଳେ ଭାବିବାରେ ଲାଗିଲେ— ଇଂରେଜମାନେ ଆମର ଶିକ୍ଷାରେ ଖୁବ୍ ବାଧା ସୃଷ୍ଟି କରୁଛନ୍ତି । ସରକାର ଆମକୁ ଶିକ୍ଷିତ କରିବାର ସୁଯୋଗ ନଦେଇ ଶୋଷଣ କରିବାରେ ଲାଗିଛନ୍ତି । ବେସରକାରୀ ଅନୁଷ୍ଠାନ ମୁଣ୍ଡ ନଟେକିଲେ ବିଦେଶୀ ଶାସକ ଆମ ଦେଶର ଯୁବକଙ୍କୁ ପଙ୍ଗୁ କରିଦେବେ ।

ସେତେବେଳେ କଟକରେ ଗୋଟିଏ ମାତ୍ର ପ୍ରାଥମିକ ବିଦ୍ୟାଳୟ ଥିଲା । ତାହା ମଧ୍ୟ ଅତି ମୁମୂର୍ଷୁ ଅବସ୍ଥାରେ । ପ୍ୟାରୀମୋହନ ମନପ୍ରାଣ ଦେଇ ଏହି ବିଦ୍ୟାଳୟର ଉନ୍ନତି କରିଥିଲେ । ପରେ ଗୋବିନ୍ଦ ରଥଙ୍କ ସହଯୋଗ ଓ ପ୍ୟାରୀମୋହନଙ୍କ ଉଦ୍ୟମରେ ଏହା ହେଲା ପ୍ୟାରୀମୋହନ ଏକାଡେମୀ ହାଇସ୍କୁଲ ।

ପ୍ୟାରୀମୋହନଙ୍କୁ ଏବେ ମାତ୍ର ୨୭ ବର୍ଷ ବୟସ । ଓଡ଼ିଆ ଯୁବକଙ୍କୁ ନିର୍ଭୀକ, ସତ୍ୟବାଦୀ, ସ୍ପଷ୍ଟବାଦୀ, ମାତୃଭାଷା ଓ ମାତୃଭୂମି ପ୍ରେମୀ କରାଇବା ପାଇଁ ପ୍ୟାରୀମୋହନ ଅପ୍ରାଣ ଉଦ୍ୟମ କରିଥିଲେ । ଓଡ଼ିଆ ଜାତି ବିଶ୍ୱ ପ୍ରସିଦ୍ଧ । ହେଲେ ଏହାର ଏକ ଇତିହାସ ଲେଖା ନଥିବାରୁ ଭାଷା ସରକାରୀ ଭାବେ ଗ୍ରହଣ କରାଯାଉ ନାହିଁ ···ଏପରି ଭାବି ପ୍ୟାରୀମୋହନ ଲେଖି ବସିଲେ ଓଡ଼ିଶାର ପୂର୍ଣ୍ଣାଙ୍ଗ ଇତିହାସ ।

ପ୍ୟାରୀମୋହନ ଆମ ପାଇଁ ବହୁତ କିଛି କରିବା ପାଇଁ ଇଚ୍ଛାକରିଥିଲେ । ମାତ୍ର ତାଙ୍କୁ ୨୯ ବର୍ଷ ବୟସ ହୋଇଥିବାବେଳେ ସେ ଇହଲୀଳା ସଙ୍ଗ କଲେ ।

## ହରିହର ପଣ୍ଡା

[ ଖ୍ରୀ: ୧୮୭୭ ରୁ ଖ୍ରୀ:୧୯୩୭ ]

୧୮୭୭ ମସିହା । ସେତେବେଳେ ଓଡ଼ିଶାରେ ନଅଙ୍କ ଦୁର୍ଭିକ୍ଷ ପଡ଼ିଥିଲା । ସେହିବର୍ଷ ହରିହର ଜନ୍ମ ହୋଇଥିଲେ ଗଞ୍ଜାମ ଜିଲ୍ଲା ଭଞ୍ଜନଗର ନିକଟବର୍ତ୍ତୀ ନେଡଟଙ୍ଗା ନାମକ ଗ୍ରାମରେ । ସେ ତାଙ୍କ ଗ୍ରାମ ଓ ଭଞ୍ଜନଗରରେ ଇ ବାଲ୍ୟଶିକ୍ଷା ପାଇଥିଲେ ।

ଏହାପରେ ସେ ବ୍ରହ୍ମପୁରସ୍ଥ ଖଲିକୋଟ୍ କଲେଜରୁ ମେଟ୍ରିକ୍ ପାଶକଲେ । ଏବଂ ରାଜମହେନ୍ଦ୍ରୀ କଲେଜକୁ ଯାଇଥିଲେ

ବି.ଏଲ୍. ପାଠପଢ଼ିବା ପାଇଁ । ସେ ସମୟରେ ଗଞ୍ଜାମର ଦକ୍ଷିଣାଞ୍ଚଳ ମାଡ୍ରାସ କାଉନସିଲ ଅଧୀନରେ ଥିଲା । ହରିହର ପଣ୍ଡା ଉଚ୍ଚଶିକ୍ଷା ପାଇ ଆସିବାରେ ଓକିଲାତି ବ୍ୟବସାୟ କରୁଥିଲେ ।

ଗଞ୍ଜାମ ଜିଲ୍ଲାରେ ସେତେବେଳେ କଚେରୀ ଭାଷାଥିଲା ତେଲୁଗୁ । ଓଡ଼ିଆଙ୍କ ଉପରେ ଜବରଦସ୍ତ ତେଲୁଗୁ ଭାଷା ଲଦିଦିଆ ହୋଇଥିଲା । ଓଡ଼ିଆ ବହୁଳ ଅଞ୍ଚଳରେ ଓଡ଼ିଆ ଭାଷାର ବ୍ୟବହୃତ ହେବା ଉଚିତ । ଏହା ଭାବି ହରିହର ପ୍ରଥମେ ଆନ୍ଦୋଳନ ଆରମ୍ଭ କରିଥିଲେ ।

ଓଡ଼ିଶାରେ ତ ବଙ୍ଗାଳୀ ଓ ତେଲୁଗୁ ଏପରି ଦୁଇ ଭାଷାଭାଷୀଙ୍କ ପ୍ରଭୁତ୍ୱ ଚାଲିଥିଲା । ସମସ୍ତ ଓଡ଼ିଆ ଭାଷା-ଭାଷୀ ଅଞ୍ଚଳକୁ ଏକାଠିକରି ଏକ ସ୍ୱତନ୍ତ୍ର ଓଡ଼ିଶା ଦେଶ ମିଶ୍ରଣ ହେବା ଉଚିତ ବୋଲି ହରିହର ସବୁବେଳେ ଚିନ୍ତା କରୁଥିଲେ । ଏ ସଂକ୍ରାନ୍ତରେ ସେ ପ୍ରଚାର କରିବା ସହିତ ଆନ୍ଦୋଳନ ମଧ୍ୟ ଆରମ୍ଭ କରିଦେଲେ । ହରିହରଙ୍କୁ ଦେଶ ମିଶ୍ରଣ ଆନ୍ଦୋଳନର ଜଣେ ମୁଖ୍ୟ ପୁରୋଧା ବୋଲି କୁହାଯାଏ ।

ଓକିଲ ଓ ସୁବକ୍ତା ହରିହର ୧୯୨୦ ମସିହାରେ ମାଡ୍ରାସ କାଉନ୍‌ସିଲର ସଭ୍ୟ ହେଲେ । ସେ ସଭ୍ୟ ହେବା ସଙ୍ଗେ ସଙ୍ଗେ



ହରିହର ପଣ୍ଡା

ମାତୃଭାଷାର ପ୍ରତିଷ୍ଠା ନିମନ୍ତେ ଲାଗିପଡ଼ିଲେ । ସେତେବେଳେ ଘୋର ବିରୋଧ ସତ୍ତ୍ୱେ ଗଞ୍ଜାମ ଜିଲ୍ଲାରେ ତେଲୁଗୁ ବଦଳରେ ଓଡ଼ିଆ କଚେରୀ ଭାଷାରୂପେ ବ୍ୟବହାର କରାଗଲା ।

ଜାତି ଓ ଭାଷାପ୍ରେମୀ ହରିହର ଏଥର ସ୍କୁଲ କଲେଜରେ ଓଡ଼ିଆ ଭାଷା ଓ ସାହିତ୍ୟ ପାଠ କରିବାର ବ୍ୟବସ୍ଥା ହାତକୁ ନେଲେ । ଏଥିପାଇଁ ତାଙ୍କୁ ଖୁବ ସଂଗ୍ରାମ କରିବାକୁ ପଡ଼ିଥିଲା, ବହୁ ଆନ୍ଦୋଳନ କରିବାକୁ ମଧ୍ୟ ପଡ଼ିଥିଲା ।

ହରିହର ନିଜ ଉଦ୍ୟମରେ ଗ୍ରନ୍ଥ ସଂଗ୍ରହ କରି ଅସିକାରେ ଏକ ଭର୍ଣ୍ଣାକୁଲାର ସ୍କୁଲ ବସାଇଥିଲେ । ଏହି ସ୍କୁଲର ନାମ ଥିଲା 'ମେକ୍‌ମାଇକେଲ ଏଙ୍ଗ୍ଲୋ-ସଂସ୍କୃତ ସ୍କୁଲ୍' । ଏହି ପାଠଶାଳାରେ ସେ ନିଜେ ବିନା ବେତନରେ ଛାତ୍ରଙ୍କୁ ଇଂରାଜୀ ପଢ଼ାଉଥିଲେ ।

ଗଞ୍ଜାମ ଜିଲ୍ଲାରେ ସେ ଦେଶମିଶ୍ରଣର ପୂର୍ଣ୍ଣ ଦାୟିତ୍ୱ ନେଇଥିଲେ । ଓଡ଼ିଶା ଦେଶ-ମିଶ୍ରଣ ନିମନ୍ତେ ବ୍ରିଟିଶ ସରକାରଙ୍କୁ ଆବେଦନ କରିବାରେ ଏବଂ ଲୋକମତକୁ ଆନ୍ଦୋଳନର ରୂପରେଖ ଦେବାରେ ହରିହର ଅଗ୍ରଗଣ୍ୟ । ହରିହରଙ୍କ ଭଳି କେତେକ ନିଷ୍ଠାପର ଜାତିପ୍ରେମୀଙ୍କ ନିଷ୍ଠା, ତ୍ୟାଗ ଓ ଅକ୍ଳାନ୍ତ ପରିଶ୍ରମ ଯୋଗୁଁ ୧୯୩୬ରେ ଓଡ଼ିଶା ଏକ ଓଡ଼ିଆ ଭାଷାଭାଷୀ ସ୍ୱତନ୍ତ୍ର ପ୍ରଦେଶ ହେଲା । ଏହାର ପରବର୍ଷ, ୧୯୩୭ ମସିହା ଡିସେମ୍ବର ମାସରେ ଓଡ଼ିଶାର ଏହି ବରପୁତ୍ର ମୃତ୍ୟୁ ବରଣ କଲେ ।

# ନୀଳମଣି ବିଦ୍ୟାରତ୍ନ

[ ଖ୍ରୀ: ୧୮୬୭ ରୁ ଖ୍ରୀ: ୧୯୨୪ ]

କଲମର ମୂନ ତରବାରୀର ଧାରଠାରୁ ଅଧିକ ଶକ୍ତ—ଏହା ପ୍ରମାଣ କରିଦେଇଥିଲେ ନୀଳମଣି ମିଶ୍ର । ନୀଳମଣି ମିଶ୍ର ଥିଲେ ଜଣେ ଏକନିଷ୍ଠ ଓଡ଼ିଆ ଭାଷା ଓ ଜାତି ପ୍ରେମୀ ।

ନୀଳମଣି ବାଙ୍କୀ ନିକଟବର୍ତ୍ତୀ ବ୍ରଜବିହାରୀ-ପୁର ଶାସନରେ ୧୮୬୭ ମସିହାରେ ଜନ୍ମ ହୋଇଥିଲେ । ତାଙ୍କ ପିତାଙ୍କ ନାମ ହେଉଛି ଗୌରଚରଣ ମିଶ୍ର । ଓଡ଼ିଆ ସାହିତ୍ୟ ଓ ସଂସ୍କୃତ ସାହିତ୍ୟ ପ୍ରତି ନୀଳମଣିଙ୍କର ପିଲାଟି ଦିନରୁ ଖୁବ୍ ଆଗ୍ରହ ଥିଲା । ଏହି ଦୁଇ ଭାଷାରେ ସେ ପାଣ୍ଡିତ୍ୟ ଅର୍ଜନ କରିଥିଲେ ।

୧୮୮୭ ମସିହା କଥା । ସେତେବେଳେ ବାମଣ୍ଡାର ମହାରାଜା ଥିଲେ ସର୍ ବାସୁଦେବ ସୁଢ଼ଳଦେବ । ସେ ସମ୍ବଲପୁର ହିତୈଷିଣୀ ନାମରେ ଓଡ଼ିଆ ପତ୍ରିକା ପ୍ରକାଶ କରିଥିଲେ । ସେତେବେଳେ ନୀଳମଣି ମିଶ୍ର ଏହାର ଯୋଗ୍ୟ ସମ୍ପାଦକ ହୋଇଥିଲେ । ତାଙ୍କର ସାହିତ୍ୟ ନିଷ୍ଠା ଦେଖି ବାମଣ୍ଡା ରାଜା ତାଙ୍କୁ "ବିଦ୍ୟାରତ୍ନ" ଉପାଧି ଦେଇଥିଲେ ।

ସେତେବେଳେ ସମ୍ବଲପୁର ଥିଲା ମଧ୍ୟ-ପ୍ରଦେଶ ଅଧୀନରେ । ଆଉ ସମ୍ବଲପୁରରେ

କଚେରୀ ଭାଷା ହୋଇଥିଲା ହିନ୍ଦୀ । ନୀଳମଣି ତାଙ୍କ ପତ୍ରିକା ମାଧ୍ୟମରେ ଏହାକୁ ବିରୋଧ କରିଥିଲେ, ଆନ୍ଦୋଳନ କରିଥିଲେ । ସଂଖ୍ୟାରେ ଅଧିକ ଥିବା ଓଡ଼ିଆ ଅଞ୍ଚଳରେ ହିନ୍ଦୀ ଭାଷା ଉଠାଇ ଦେବାପାଇଁ ସେ ତୁମୁଳ ଆନ୍ଦୋଳନ କରିଥିଲେ । ତାଙ୍କର ଏକନିଷ୍ଠ ଆନ୍ଦୋଳନ ଫଳରେ ୧୯୦୩ ମସିହା ଜାନୁୟାରୀ ୧ ତାରିଖରୁ ସମ୍ବଲପୁରର କଚେରୀ ଭାଷା ହୋଇଥିଲା ଓଡ଼ିଆ ।

ନୀଳମଣି ଏତିକରେ ନୀରବ ରହି ନ ଥିଲେ । ତାଙ୍କ ଆନ୍ଦୋଳନ ଚାଲୁ ରହିଥିଲା ସମ୍ବଲପୁରକୁ ଓଡ଼ିଶାରେ ମିଶାଇବା ପାଇଁ । ଶେଷରେ ତାଙ୍କର ଜୟ ହୋଇଥିଲା । ୧୯୦୫ ମସିହାରେ ସମ୍ବଲପୁର ଓଡ଼ିଶାରେ ମିଶିଲା ।

ନୀଳମଣିଙ୍କର ଏଥର ନଜର ପଡ଼ିଲା ଦକ୍ଷିଣ-ଓଡ଼ିଶା ଉପରେ । ବ୍ରହ୍ମପୁରରେ କଚେରୀ ଭାଷାରୂପେ ତେଲୁଗୁ ବ୍ୟବହାର କରାହେଉଥିଲା । ହରିହର ମର୍ଦ୍ଦରାଜ ଖଲିକୋଟର ରାଜା ହୋଇଥିଲେ । ସେ ଥିଲେ ପ୍ରଜାବତ୍ସଳ । ପୁଣି ଦେଶପ୍ରେମୀ । ସେ ନୀଳମଣିଙ୍କୁ ତାଙ୍କ ପାଖକୁ ନିମନ୍ତ୍ରଣ କରି ଆଣିଲେ । ନୀଳମଣି 'ପ୍ରଜାବନ୍ଧୁ' ନାମରେ ଗୋଟିଏ ସାହିତ୍ୟ ପତ୍ର ସମ୍ପାଦନା କରି ତହିଁରେ ଦକ୍ଷିଣ ଓଡ଼ିଶାର ଦୁଃଖ କଥା ପ୍ରକାଶ କରିବାରେ ଲାଗିଲେ । ଆଉ ବ୍ରହ୍ମପୁରରେ ଗୋଟିଏ 'ଓଡ଼ିଆ ସଭା' ଡାକିଲେ ।



ପଣ୍ଡିତ ନୀଳମଣି ବିଦ୍ୟାରତ୍ନ

ନୀଳମଣି ଓ ହରିହରଙ୍କ ଚେଷ୍ଟାରେ ଗଞ୍ଜାମରେ ତେଲୁଗୁ ବଦଳରେ ଓଡ଼ିଆ କଚେରୀ ଭାଷା ହେଲା । ସେ ଯେଉଁ 'ଓଡ଼ିଆ ସଭା' ଡାକିଥିଲେ ତାହା ହେଲା 'ଉତ୍କଳ-ସମ୍ମିଳନୀ'ର ମଞ୍ଜି । ମଞ୍ଜି ପୋତିଲେ ଗଛ ହୁଏ । ୧୯୦୨ର ଓଡ଼ିଆ ସଭା ୧୯୦୩ରେ ବିରାଟ ରୂପଧରି 'ଉତ୍କଳ-ସମ୍ମିଳନୀ' ନାମରେ ଖ୍ୟାତ ହୋଇଗଲା । ଏହି 'ଉତ୍କଳ-ସମ୍ମିଳନୀ' ହିଁ ଭବିଷ୍ୟତରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଢ଼ିଥିଲା ।

ନୀଳମଣି ବିଦ୍ୟାରତ୍ନ ଥିଲେ ଅସାଧାରଣ ଜ୍ଞାନୀ ଏବଂ ଅତି ଉଦାର ଲୋକ । ସେ ଯେଉଁ ଯେଉଁ ସ୍ଥାନକୁ ଯାଇଛନ୍ତି ସେହି ସେହିଠାରେ ଓଡ଼ିଆ ଭାଷା ଆଉ ସାହିତ୍ୟର

ଜୟ ଜୟକାର କରିଛନ୍ତି । ଆଉ ଭାଷା-ସାହିତ୍ୟ ମାଧ୍ୟମରେ ଦେଶ ସଂଗଠନ କରିଛନ୍ତି । ସେ ଗୋପବନ୍ଧୁ, ମଧୁସୂଦନ, ରାଧାନାଥ ରାୟଙ୍କଠାରୁ ଗୁଣରେ କିଛି କମ୍ ନଥିଲେ । ସେ ଥିଲେ କର୍ମଯୋଗୀ । କଠୋର ପରିଶ୍ରମ କରୁଥିବା ନୀଳମଣି ଖ୍ରୀ: ୧୯୨୪ ଜୁଲାଇ ୨୭ ତାରିଖ ଦିନ କଟକରେ ହଠାତ୍ ଇହଲୀଳା ସଙ୍ଗ କରିଥିଲେ ।

## ମହାରାଜା କୃଷ୍ଣଚନ୍ଦ୍ର ଗଜପତି

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ହେଉଛନ୍ତି ସ୍ୱତନ୍ତ୍ର ଓଡ଼ିଶା ରାଜ୍ୟର ପ୍ରଥମ ପ୍ରଧାନମନ୍ତ୍ରୀ । ନବ-ଉତ୍କଳର ସେ ଅନ୍ୟତମ ପ୍ରତିଷ୍ଠାତା ।

ମହାରାଜା କୃଷ୍ଣଚନ୍ଦ୍ର ଗଜପତି ୧୮୯୨ ମସିହା ଅପ୍ରେଲ ମାସ ୨୦ ତାରିଖ ଦିନ ପାରଳାଖେମୁଣ୍ଡି ଠାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତା ଗୌରଚନ୍ଦ୍ର ଗଜପତି ପାରଳାଖେମୁଣ୍ଡିରେ ଏଫ୍. ଏ. କଲେଜ ସ୍ଥାପନ କରିଥିଲେ । କୃଷ୍ଣଚନ୍ଦ୍ର ଗଜପତି ମହାରାଜା ପଦରେ ଅଭିଷିକ୍ତ ହେବା ପରେ ପରେ ଏଫ୍. ଏ. କଲେଜକୁ ଡ଼ିଗ୍ରୀ କଲେଜ କରିଥିଲେ । ସେ ଥିଲେ ପ୍ରଜାଙ୍କ ଶିକ୍ଷା, କୃଷି ଓ ଗମନାଗମନ ଉନ୍ନତି ନିମନ୍ତେ ଅଧିକ ସଚେତନ ।

ସେତେବେଳେ ଖଲିକୋଟ ମହାରାଜା, ମଧୁସୂଦନ ଦାସ, ନୀଳମଣି ବିଦ୍ୟାରତ୍ନଙ୍କ ଉଦ୍ୟମରେ ଉତ୍କଳ-ସମ୍ମିଳନୀ ଗଢ଼ା ହୋଇ ଯାଇଥିଲା । ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠନ କରିବା ପାଇଁ ମୟୂରଭଞ୍ଜ ମହାରାଜା, ଧରାକୋଟ ରାଜାସାହେବ, ତାଳଚେରର ରାଜାସାହେବ, କନିକା ରାଜା, ପଣ୍ଡିତ ଗୋପବନ୍ଧୁ ଆଦି ସ୍ୱଦେଶ ପ୍ରେମୀ ନେତାମାନେ ଉତ୍କଳ-ସମ୍ମିଳନୀ ଜରିଆରେ ଆନ୍ଦୋଳନ ଚାଲୁ ରଖିଥିଲେ । ଏହି ନୂତନ ଓଡ଼ିଶା ପ୍ରଦେଶ ଗଠନ ଆନ୍ଦୋଳନ ୧୯୨୦ ମସିହା ପରେ ଧିମେଇ ଗଲା । କାରଣ ଉତ୍କଳ-ସମ୍ମିଳନୀ ଏହି କାର୍ଯ୍ୟ କଂଗ୍ରେସ ଉପରେ ଛାଡ଼ିଦେଲା । କ୍ରମେ ଏହି ଯୋଜନା ଏପରି ଶିଥିଳ ହୋଇଗଲା ଯେ ଓଡ଼ିଆଙ୍କ ଆନ୍ଦୋଳନ ସ୍ୱପ୍ନରେ ପରିଣତ ହେବାକୁ ବସିଲା ।

ଏପରି ଏକ ସମୟରେ ମହାରାଜା କୃଷ୍ଣଚନ୍ଦ୍ର ଗଜପତି ନାରାୟଣ ଦେବ ଗୋଲ-



ମହାରାଜା ଶ୍ରୀ କୃଷ୍ଣଚନ୍ଦ୍ର ଗଜପତି ଦେବ

ଟେବୁଲ ବୈଠକରେ ଯୋଗ ଦେବାର ସୁଯୋଗ ପାଇଲେ । ସେ ସେଠାରେ ଓଡ଼ିଶା ଓ ଦେଶ-ମିଶ୍ରଣ ବିଷୟରେ ବ୍ୟକ୍ତିଗତ ଭାବରେ ବହୁ ଯୋଗାଡ଼ କରିଥିଲେ । ଯାହା ଫଳରେ ୧୯୩୬ ମସିହାରେ ସ୍ୱତନ୍ତ୍ର ଓଡ଼ିଶା ପ୍ରଦେଶ ଗଠିତ ହେଲା ଏବଂ କୃଷ୍ଣଚନ୍ଦ୍ର ଗଜପତି ଏହାର ପ୍ରଥମ ପ୍ରଧାନମନ୍ତ୍ରୀ ହୋଇଥିଲେ । ଏହା ପୂର୍ବରୁ ସେ ମାନ୍ଦ୍ରାସ ବ୍ୟବସ୍ଥାପକ ସଭା ଓ ରୟାଲ କୃଷି କମିସନର ମଧ୍ୟ ସଭ୍ୟ ହୋଇଥିଲେ ।

## ହରିହର ମର୍ଦ୍ଦରାଜ ଦେବ

[ ଖ୍ରୀ: ୧୮୭୪ ରୁ ଖ୍ରୀ: ୧୯୦୯ ]

ହରିହର ମର୍ଦ୍ଦରାଜ ୧୮୭୪ ମସିହା ଜୁଲାଇ ମାସ ୧୦ ତାରିଖ ଦିନ ଖଲ୍ଲିକୋଟ ଗଡ଼ରେ ଜନ୍ମଗ୍ରହଣ କରିଥିଲେ । ଖଲ୍ଲିକୋଟ ଓ ଆଠଗଡ଼ର ରାଜା ନାରାୟଣ ମର୍ଦ୍ଦରାଜ ହେଉଛନ୍ତି ତାଙ୍କ ପିତା ।

ହରିହରଙ୍କ ଛାତ୍ରଜୀବନ ପାରଳା-ଖେମୁଣ୍ଡିରେ କଟିଥିଲା । ସେ ପାରଳାଖେମୁଣ୍ଡିରେ ଓଡ଼ିଆ ଓ ସଂସ୍କୃତ ଭାଷା ଶିକ୍ଷାକରି ଉଚ୍ଚଶିକ୍ଷା ପାଇଁ ମାନ୍ଦ୍ରାସ ଯାଇଥିଲେ । ୧୮୯୫ ମସିହାରେ ସେ ତାଙ୍କ ପାଠପଢ଼ା ସାରିଥିଲେ । ୧୮୯୮ ମସିହାରେ ହରିହର ଖଲ୍ଲିକୋଟର ରାଜା ହୋଇଥିଲେ ।



ହରିହର ମର୍ଦ୍ଦରାଜ

ହରିହର ଥିଲେ ପ୍ରଜା ଓ ଓଡ଼ିଆ ଭାଷା-ପ୍ରେମୀ ଜଣେ ସୁଶାସକ । ରାଜା ହେବାକ୍ଷଣି କୃଷିର ଉନ୍ନତି ନିମନ୍ତେ ସେ ଜଳସେଚନର ସୁବିଧା କରିଥିଲେ । ଶିକ୍ଷାର ପ୍ରସାର ନିମନ୍ତେ ସେ ରାଜଧାନୀରେ ଗୋଟିଏ ସଂସ୍କୃତ ସ୍କୁଲ ଓ ଗୋଟିଏ ମଧ୍ୟ ଇଂରାଜୀ ସ୍କୁଲ ବସାଇଥିଲେ ଏବଂ ନିଜ ଖର୍ଚ୍ଚରେ ତାହା ଚଳାଉଥିଲେ ।

ସେତେବେଳେ ଆମ ଓଡ଼ିଆ ସମାଜ ଥିଲା ଅତିଶୟ ରକ୍ଷଣଶୀଳ । ତେବେ ସୁଦ୍ଧା ହରିହର ସ୍ତ୍ରୀ-ଶିକ୍ଷାର ବହୁଳ ପ୍ରଚାର କରିଥିଲେ । କଟକରେ ସେ ସମୟରେ ରେଭେନ୍‌ସା ବାଳିକା ବିଦ୍ୟାଳୟ ଥିଲା । ଯିବା-ଆସିବାର ସୁବିଧା ନଥିବାରୁ ଘରୁ ଓଡ଼ିଆ ଝିଅମାନେ ସ୍କୁଲକୁ ବେଶୀ ସଂଖ୍ୟାରେ ଯାଉନଥିଲ । ଏମାନଙ୍କ ସୁବିଧା ପାଇଁ ହରିହର ନିଜ ଖର୍ଚ୍ଚରେ ଘୋଡ଼ାଗାଡ଼ି ବ୍ୟବସ୍ଥା କରିଥିଲେ ।

ପ୍ରଜାଙ୍କ ସ୍ୱାସ୍ଥ୍ୟରକ୍ଷା ଉଦ୍ଦେଶ୍ୟରେ ସେ ଖଲିକୋଟରେ ଗୋଟିଏ ହସ୍‌ପିଟାଲ ବସାଇଥିଲେ ।

ସେତେବେଳେ ବ୍ରହ୍ମପୁରରେ ଗୋଟିଏ ମାତ୍ର ଜିଲ୍ଲାସ୍କୁଲ ଥିଲା । ସ୍ଥାନୀୟ ଲୋକଙ୍କ ଉଦ୍ୟମରେ ଏହି ସ୍କୁଲ ଚାଲିଥିଲା । ଆର୍ଥିକ ସଙ୍କଟରେ ପଡ଼ି ଏକଦା ଏହି ସ୍କୁଲ ବନ୍ଦ ହୋଇଯାଇ ଥାଆନ୍ତା । ମାତ୍ର ହରିହର ଏକଲକ୍ଷ ଟଙ୍କା ଦାନକରି ସ୍କୁଲର ଦାୟିତ୍ୱ ନିଜ ହାତକୁ ନେଇଥିଲେ । ତା'ନ କରିଥିଲେ ଗଞ୍ଜାମ ଅଞ୍ଚଳର ଓଡ଼ିଆମାନେ ଶିକ୍ଷା ଦିଗରେ ଖୁବ୍ ପଛରେ ପଡ଼ିଯାଇ ଥାଆନ୍ତେ । ସେହି ଜିଲ୍ଲାସ୍କୁଲ ବର୍ତ୍ତମାନ ଖଲ୍ଲିକୋଟ କଲେଜ ନାମରେ ପରିଚିତ ।

ସେତେବେଳେ ସୀମାନ୍ତ ଜିଲ୍ଲାର ଲୋକେ ପଡ଼ୋଶୀ ରାଜ୍ୟର ଲୋକଙ୍କ ଦ୍ୱାରା ନିର୍ଯ୍ୟାତିତ ହେଉଥିଲେ । ଓଡ଼ିଆ ଭାଷା-ଭାଷୀ ଲୋକଙ୍କ ନିମନ୍ତେ ଗୋଟିଏ ସ୍ୱତନ୍ତ୍ର ପ୍ରଦେଶ କରିବାର

ସ୍ୱପ୍ନ ସର୍ବପ୍ରଥମେ ନୀଳମଣି ବିଦ୍ୟାରତ୍ନ ଦେଖିଥିଲେ । ଏବଂ ସେ ଖଲ୍ଲିକୋଟ ରାଜାଙ୍କୁ ଉତ୍ସାହିତ କରିଥିଲେ । ୧୯୦୨ ମସିହାରେ ତାଙ୍କର ଚେଷ୍ଟାରେ ରମ୍ଭାଠାରେ ପ୍ରଥମ ଓଡ଼ିଆ-ସମ୍ମିଳନୀ ଗଢ଼ାହେଲା । ୧୯୦୩ରେ ଏହା ଉତ୍କଳ-ସମ୍ମିଳନୀର ରୂପନେଲା । ଏହି ଉତ୍କଳ-ସମ୍ମିଳନୀ ପୂର୍ବର ପ୍ରଥମ ବୈଠକ ବ୍ରହ୍ମପୁରରେ ୧୯୦୩ ମସିହାରେ ବିରାଟ ଆକାରରେ ବସିଥିଲା । ସମ୍ମିଳନୀର ସମସ୍ତ ଖର୍ଚ୍ଚ ହରିହର ବହନ କରିଥିଲେ । ପରବର୍ତ୍ତୀ ମାସରେ କଟକଠାରେ ବିଧିବଦ୍ଧ ଉତ୍କଳ-ସମ୍ମିଳନୀର ପ୍ରଥମ ଅଧିବେଶନ ବସିଥିଲା ।

ଓଡ଼ିଆ ଭାଷା-ପ୍ରେମୀ ହରିହର ଓଡ଼ିଆ ଭାଷାର ପ୍ରସାର ନିମନ୍ତେ ଗୋଟିଏ ଛାପାଖାନା ବସାଇଥିଲେ । ନୀଳମଣି ବିଦ୍ୟାରତ୍ନଙ୍କ ସମ୍ପାଦନାରେ ସେ ପ୍ରଥମେ "ପ୍ରଜାବନ୍ଧୁ" ସାପ୍ତାହିକ ପତ୍ର ପ୍ରକାଶ କରିଥିଲେ । ଓଡ଼ିଆ ଓ ସଂସ୍କୃତର ପ୍ରଚାର ନିମନ୍ତେ ସେ "ସଂସ୍କାରକ" ଓ "ଉତ୍କଳ ମଧୁପ" ନାମରେ ଦୁଇଟି ମାସିକ ପତ୍ରିକା ମଧ୍ୟ ପ୍ରକାଶ କରିଥିଲେ ।

ହରିହର ସାରା ଦକ୍ଷିଣ ଭାରତ ଓ ସିଂହଳ ବୁଲିଥିଲେ । ସେ ଥିଲେ ଜଣେ ସଂଗ୍ରାହକ । ନାନା ସ୍ଥାନ ବୁଲି ସେ ବହୁ ଦ୍ରବ୍ୟ ସଂଗ୍ରହ କରିଥିଲେ । ବହୁ ଅନୁଷ୍ଠାନ ତାଙ୍କ ନିଜ ଖର୍ଚ୍ଚରେ ଗଢ଼ା ହୋଇଥିଲା । ଏବଂ ଅସଂଖ୍ୟ ଲୋକ ତାଙ୍କଠାରୁ ଆର୍ଥିକ ସାହାଯ୍ୟ ପାଇ ବିଦ୍ୟାଶିକ୍ଷା କରିଥିଲେ । ଓଡ଼ିଶାର ପ୍ରଜା ହିତୈଷୀ ରାଜାଙ୍କ ମଧ୍ୟରେ ହରିହର ହେଉଛନ୍ତି ଅନ୍ୟତମ । ସେ ୧୯୦୯ ମସିହାରେ ଦେହତ୍ୟାଗ କରି-ଥିଲେ ।

## ପଣ୍ଡିତ ଗୋପବନ୍ଧୁ ଦାସ

[ ଖ୍ରୀ: ୧୮୭୭—ଖ୍ରୀ: ୧୯୨୮ ]

ଉତ୍କଳର ମଣି ହେଉଛନ୍ତି ପଣ୍ଡିତ ଗୋପବନ୍ଧୁ ଦାସ । ସେ ଦେଶପ୍ରାଣ, ସେ ଜନ ସେବକ, ସେ କବି ଏବଂ ସେ ହିଁ ହେଉଛନ୍ତି ହଜାର ହଜାର ଲୋକଙ୍କୁ ପ୍ରଭାବିତ କରିପାରୁଥିବା ବକ୍ତା ।

ଗୋପବନ୍ଧୁ ୧୮୭୭ ମସିହାରେ ପୁରୀ-ଜିଲ୍ଲାର ସୁଆଣ୍ଡୋ ଗାଁରେ ଜନ୍ମ ହୋଇ-ଥିଲେ । ତାଙ୍କ ପିତାଙ୍କ ନାମ ଦୈତାରି ଦାସ ଓ ମାତାଙ୍କ ନାମ ସ୍ୱର୍ଣ୍ଣମୟୀ ଦେବୀ । ଗୋପବନ୍ଧୁ ଚାଟଶାଳୀ ପାଠ ଗାଁ ଚାହାଲୀରେ ପଢ଼ି ସାରିବା ପରେ ରୂପଦେଇପୁର ମଧ୍ୟ-ଭର୍ଣ୍ଣାକୁଲାର ସ୍କୁଲରୁ ପ୍ରାଇମାରି ପାଶ୍ କଲେ । ଏହାପରେ ସେ ପୁରୀ ଜିଲ୍ଲାସ୍କୁଲରୁ ଏଣ୍ଟ୍ରାନ୍ସ୍ ଖ୍ରୀ: ୧୮୯୯ ରେ ପାଶ୍ କଲେ । ସେ କଟକ



ଗୋପବନ୍ଧୁ ଦାସ

ରେଭେନସା କଲେଜରୁ ବି. ଏ. ପାଶ୍ କଲେ ୧୯୦୪ ରେ ଓ ୧୯୦୬ ରେ କଲିକତାରୁ ଓକିଲାତି ପାଶ୍ କରିଥିଲେ ।

ପିଲାଟି ଦିନରୁ ଗୋପବନ୍ଧୁ ହୋଇ-ଥିଲେ ସମାଜ ସେବକ । ସେତେବେଳେ ସମାଜ ଥିଲା ରକ୍ଷଣଶୀଳ । ନାନାପ୍ରକାର କୁ-ସଂସ୍କାର ଆଉ ଅନ୍ଧ-ବିଶ୍ୱାସ ସମାଜକୁ ଘୋଟି ରହିଥିଲା । ଏ ସମସ୍ତକୁ ସମାଜରୁ ହଟାଇବା ପାଇଁ ସେ ପିଲାଟି ଦିନରୁ ଉଦ୍ୟମ କରିଥିଲେ । ଧରମ ଆଉ ପୁଣ୍ୟ ପାଇଁ ଯେତିକ ନୁହେଁ, ରକ୍ଷଣଶୀଳତାକୁ ଏବଂ କୁ-ସଂସ୍କାରକୁ ଦୂର କରିବା ପାଇଁ ସେ ଅନେକ ତଥାକଥିତ ଧର୍ମାନୁଷ୍ଠାନ କରୁଥିଲେ, ଭାଗବତ ସପ୍ତାଙ୍ଗ କରୁଥିଲେ । ଏହାଦ୍ୱାରା ସେ ପ୍ରତେକଙ୍କର ପ୍ରିୟ ହୋଇପାରିଥିଲେ ।

ଗୋପବନ୍ଧୁ ଥିଲେ ଅତି ଦୟାଳୁ । ଓଡ଼ିଆ ଲୋକେ ଗରିବ । ଓଡ଼ିଆଙ୍କ ଦାରିଦ୍ର୍ୟ ଦୂର୍ କରିବା ପାଇଁ ସେ ନାନା ପ୍ରକାର କାର୍ଯ୍ୟ କରୁଥିଲେ ।

ଗୋପବନ୍ଧୁ ଓକିଲାତି ପାଶ୍ କରିବା ପରେ କିଛି ଦିନ ଶିକ୍ଷକତା ଓ କିଛିଦିନ ଓକିଲାତି କରିଥିଲେ । ସେ ହିଁ ପ୍ରଥମ ଓଡ଼ିଆ ଜନ ନାୟକ, ଯେ କି ଗୃହକରି କରିବେ ନାହିଁ ବୋଲି ପ୍ରତିଜ୍ଞା କରିଥିଲେ । ଦେଶ ସେବାରେ ଜୀବନ ବିତାଇ ଦେବା-ପାଇଁ ପଣ କରିଥିଲେ । ତାଙ୍କର ଅପୂର୍ବ ତ୍ୟାଗର୍ଭୀ ଶପଥ କଥା ଶୁଣିଲେ ଲୋମ ଟାଙ୍କୋରି ଉଠେ ।

ଗୋପବନ୍ଧୁ ଜାତିର ଉନ୍ନତି କି ଭଳି ହେବ, ସେ ବିଷୟରେ ସବୁବେଳେ ଭାବୁଥିଲେ । ଫଳରେ ଓକିଲାତିରେ ତାଙ୍କ ମନ ଲାଗିଲା ନାହିଁ । ଜାତିକି ଗଢ଼ି ତୋଳିବା ପାଇଁ ମଣିଷର ପ୍ରଥମ ଅବସ୍ଥା, ବାଲ୍ୟକାଳରୁ ହିଁ ଉଦ୍ୟମ କରିବା ଆବଶ୍ୟକ । ଏପରି କଥା ସ୍ଥିରକରି ସେ ୧୯୦୯ ମସିହାରେ ଗୋଟିଏ ବିଦ୍ୟାଳୟ ଗଢ଼ିଲେ । ସତ୍ୟବାଦୀର ବକୁଳ ବନର

ଏହି ଛୋଟ ବିଦ୍ୟାଳୟଟି ଅଳ୍ପ ଦିନ ଭିତରେ ଏକ ଜାତୀୟ ବିଦ୍ୟାଳୟରେ ପରିଣତ ହୋଇଥିଲା । ବିଦ୍ୟାଳୟର ଆର୍ଥିକ ସାହାଯ୍ୟ ନିମନ୍ତେ ସେ ବହୁ କଷ୍ଟ କରିଥିଲେ । ଏପରିକି ମୟୂରଭଞ୍ଜ ମହାରାଜାଙ୍କର ଓକିଲ ମଧ୍ୟ ହୋଇଥିଲେ ।

ଗୋପବନ୍ଧୁ ଥିଲେ ସତ୍ୟବାଦୀ । ତାଙ୍କ ଜୀବନ ଥିଲା ଅତି ସରଳ । ତାଙ୍କ କଥାରେ ଅଳ୍ପ ଦରମାରେ ସେତେବେଳେ ଗୋଦାବରୀଶ ମିଶ୍ର, ନୀଳକଣ୍ଠ ଦାସ, କୃପାସିନ୍ଧୁ ମିଶ୍ର ଆଦି ପଣ୍ଡିତମାନେ ସତ୍ୟବାଦୀ ବନବିଦ୍ୟାଳୟରେ ଶିକ୍ଷକତା କରୁଥିଲେ ।

ମହାତ୍ମା ଗାନ୍ଧୀ ଲବଣ ସତ୍ୟାଗ୍ରହ କରିଥିଲେ । ମାତ୍ର ମହାତ୍ମାଗାନ୍ଧୀ ଏହା ଶିକ୍ଷା କରିଥିଲେ ଗୋପବନ୍ଧୁଙ୍କ ଠାରୁ । ବହୁଦିନ ଆଗରୁ ହିଁ ଗୋପବନ୍ଧୁ ଓଡ଼ିଶାର ଉପକୂଳରେ ଲୁଣମାରିବା ପାଇଁ ଦାବୀକରି ଆସୁଥିଲେ ।

୧୯୧୭ ରୁ ୧୯୨୦ ପର୍ଯ୍ୟନ୍ତ ସେ ବିହାର-ଓଡ଼ିଶା ଲାଟ ସଭାର ସଭ୍ୟ ହୋଇଥିଲେ । ଏହାର ବର୍ଷକ ପୂର୍ବରୁ ୧୯୧୫ ମସିହାରେ 'ସତ୍ୟବାଦୀ' ନାମରେ ଗୋଟିଏ ଉଚ୍ଚକୋଟୀର ସାହିତ୍ୟ ପତ୍ରିକା ସେ ପ୍ରକାଶ କରିଥିଲେ । ୧୯୧୯ ମସିହାର ଦଶହରା ଦିନଠାରୁ 'ସମାଜ' ପ୍ରକାଶ କଲେ ।

ଏହି ସମୟରେ ଇଂରେଜ ସରକାର ତାଙ୍କୁ ଜେଲ ଦଣ୍ଡ ଦେଇଥିଲେ । ଏହି ସମୟରେ ସେ କାରା-କବିତା, ବନ୍ଦୀର-ଆତ୍ମକଥା, ଧର୍ମପଦ, ନଚିକେତା ଆଦି କବିତା ପୁସ୍ତକ ରଚନା କରିଥିଲେ । ସେ ହଜାରିବାଗ ଜେଲରେ ଥିଲେ ।

ଏହାପରେ ଗୋପବନ୍ଧୁ ଉତ୍କଳ-ସମ୍ମିଳନୀର ସଭାପତି ହେଲେ । ସେତେବେଳେ ଓଡ଼ିଶାର କଟକ ଓ ପୁରୀ ଜିଲ୍ଲାରେ ଲାଗି ଲାଗି କେତେବର୍ଷଧରି ବନ୍ୟା ହୋଇଥିଲା । ଗୋପବନ୍ଧୁ କେତେକ ସ୍ୱେଚ୍ଛାସେବୀଙ୍କୁ ଧରି ଲାଗିପଡ଼ିଥିଲେ ଲୋକଙ୍କୁ ସାହାଯ୍ୟ କରିବାରେ । ତାଙ୍କର ଅକ୍ଳାନ୍ତ ଉଦ୍ୟମରେ ଚାରିଆଡୁ ବନ୍ୟାସାହାଯ୍ୟ ମିଳିବା ସମ୍ଭବ ହୋଇଥିଲା ।

ବିଚ୍ଛିନ୍ନାଞ୍ଚଳକୁ ଓଡ଼ିଶାରେ ମିଶାଇ ଏକ ସ୍ୱତନ୍ତ୍ର ଓଡ଼ିଆ ଭାଷା-ଭାଷୀ ପ୍ରଦେଶ କରିବା ପାଇଁ ଗୋପବନ୍ଧୁ ବହୁତ ଉଦ୍ୟମ କରିଥିଲେ । ହେଲେ ୧୯୨୮ ଜୁନ୍ ମାସ ୧୭ ତାରିଖରେ ସେ ଟାଇଫଏଡ୍ ଜ୍ୱରରେ ପଡ଼ି ଇହଲୀଳା ତ୍ୟାଗକରି ଦେଇଥିଲେ । ସେ ଆଉ କିଛିଦିନ ବଞ୍ଚିଥିଲେ ବସ୍ତର, ସିଂହଭୂମ, ମେଦନାପୁର ଆଦି ରାଜ୍ୟଠାରୁ ଅଲଗା ହୋଇ ରହି ନଥାନ୍ତା ।

# ପଣ୍ଡିତ ଗୋଦାବରୀଶ ମିଶ୍ର

[ ଖ୍ରୀ : ୧୮୮୬—ଖ୍ରୀ : ୧୯୫୬ ]

ନବ ଉତ୍କଳ ପ୍ରଦେଶର ଅନ୍ୟତମ ତୁଙ୍ଗ ମନ୍ତ୍ରୀ, ବିଶିଷ୍ଟ ଶିକ୍ଷାବିତ୍ ଏବଂ ସାହିତ୍ୟିକ ହେଉଛନ୍ତି ପଣ୍ଡିତ ଗୋଦାବରୀଶ ମିଶ୍ର । ସେ ୧୮୮୬ ମସିହାରେ ବାଣପୁର ନିକଟବର୍ତ୍ତୀ ଶ୍ରୀନିବାସପୁରରେ ଜନ୍ମ ହୋଇଥିଲେ । ତାଙ୍କ ପିତାଙ୍କ ନାମ ଲିଙ୍ଗରାଜ ମିଶ୍ର ।

ଗୋଦାବରୀଶ ଏକ ଦରିଦ୍ର ବ୍ରାହ୍ମଣ ଘରେ ଜନ୍ମହୋଇ ନିଜ ପ୍ରତିଭାବଳରେ ଓଡ଼ିଶାର ଘରେ ଘରେ ପୁଣ୍ୟଶ୍ଳୋକ ଗୋଦାବରୀଶ ନାମରେ ପରିଚିତ ହୋଇପାରିଥିଲେ । ସେ ମାଟିବଂଶ ଅବଧାନଙ୍କଠାରୁ ଚାଟଶାଳୀ ପାଠ ଓ ସଂସ୍କୃତ ଶିକ୍ଷାଲାଭ କରିବା ପରେ ଇଂରେଜୀ ଶିକ୍ଷା କରିବା ପାଇଁ ମନବଳାଇ ଥିଲେ । କଟକରେ ବି.ଏ. ପାଶ୍ କରିବା ପରେ କଲିକତା ଯାଇ ଅର୍ଥଶାସ୍ତ୍ରରେ ଏମ୍.ଏ. ପାଶ କରିଥିଲେ ।

ଗୋଦାବରୀଶ ଥିଲେ ଜଣେ ଅତି ମେଧାବୀ ଛାତ୍ର । ଏମ୍. ଏ. ପାଶ୍ କରିବା ପରେପରେ ସେ ସରକାରୀ ବୃତ୍ତି ପାଇ ବିଲାତକୁ ଯାଇଥିଲେ କୃଷି-ଗବେଷଣା ପାଇଁ ।

ଗୋଦାବରୀଶ ବିଲାତରୁ ଫେରିବାକ୍ଷଣି ବିହାର-ଓଡ଼ିଶା କୃଷି ବିଭାଗରେ ଉଚ୍ଚପଦରେ ନିଯୁକ୍ତି ପାଇଥିଲେ । ଏହାଛଡ଼ା ସେ ଅନ୍ୟତ୍ର ଅନେକ ସରକାରୀ ଉଚ୍ଚ ପଦବୀ ପାଇଥିଲେ । ମାତ୍ର ସେତେବେଳେ ଦେଶର ଡାକକୁ ସେ ଏଡ଼ାଇ ପାରିନଥିଲେ । ଅଧିକ ବେତନ ମିଳୁଥିବା ସମସ୍ତ ଉଚ୍ଚ ପଦବୀକୁ ଛାଡ଼ି ସେ ଜାତୀୟବାଦୀ ଆନ୍ଦୋଳନରେ ଯୋଗ ଦେଇଥିଲେ ।

ଗୋଦାବରୀଶ ପଣ୍ଡିତ ଗୋପବନ୍ଧୁଙ୍କ ଆହ୍ୱାନ ପାଇଲେ । ସେ ସତ୍ୟବାଦୀ ବନ ବିଦ୍ୟାଳୟରେ ଅଳ୍ପ ବେତନରେ ଶିକ୍ଷକ ହେଲେ । ୧୯୨୧ ମସିହାରେ ବନବିଦ୍ୟାଳୟର ଶିକ୍ଷକମାନେ ଜାତୀୟ ଆନ୍ଦୋଳନରେ ଯୋଗଦେବାରୁ, ସେ ମଧ୍ୟ ଏହି ଅସହଯୋଗ ଆନ୍ଦୋଳନରେ ଯୋଗଦେଇଥିଲେ ।

ଏହି ସମୟରେ ଗୋଦାବରୀଶ ମେଦିନୀପୁର ଓ ସିଂହଭୂମି ଜିଲ୍ଲାକୁ ଓଡ଼ିଆ ଜାତୀୟତାର ଜାଗରଣ ଆଣିବାକୁ ଯାଇଥିଲେ । ଏହି ଦୁଇରାଜ୍ୟ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ରୂପେ ପରିଚିତ । ସେହି ଜିଲ୍ଲା ମାନଙ୍କରେ ଓଡ଼ିଆ ବିଦ୍ୟାଳୟ ସ୍ଥାପନକରି ଓଡ଼ିଆ ସଂସ୍କୃତିକୁ ନୂତନ ଜୀବନ ଦେଇ



ପଣ୍ଡିତ ଗୋଦାବରୀଶ ମିଶ୍ର

ପାଉଥିଲେ । ସିଂହଭୂମି ଓ ମେଦନୀପୁର ଅଞ୍ଚଳରେ ଗୋଦାବରୀଶ ଖୁବ୍ ଲୋକପ୍ରିୟ ହୋଇଥିଲେ ।

ଗୋଦାବରୀଶଙ୍କ ବ୍ୟବହାର ଥିଲା ଅତି ସରଳ ଓ ମଧୁର । ହେଲେ ତାଙ୍କ ବକ୍ତୃତାର ଛନ୍ଦେ ଛନ୍ଦେ ଜାତୀୟତା ଆନ୍ଦୋଳନର ଝଡ଼ ବହିଯାଉଥିଲା । ସେ ବିହାର-ଓଡ଼ିଶା ଲେଜିସ୍‌ଲେଟିଭ୍ ସଭାର ସଭ୍ୟ ଥିବା-ବେଳେ ଖୁବ୍ ସୁନାମ ଅର୍ଜନ କରିପାରି-ଥିଲେ । ଗୋଦାବରୀଶ ହିଁ ପ୍ରଥମ ଭାରତୀୟ ଯେ କି ମଠ ବାଡ଼ି ନିୟନ୍ତ୍ରଣ ପାଇଁ ପ୍ରଥମ ବିଲ୍ ପେଶ୍ କରିଥିଲେ ।

ଓଡ଼ିଶା ସ୍ୱତନ୍ତ୍ର ପ୍ରଦେଶ ରୂପେ ଗଠିତ ହେବାପରେ ପାରଳାଖେମୁଣ୍ଡିର ମହା-ରାଜାଙ୍କ ସହିତ ସେ ନୂତନ ମନ୍ତ୍ରୀମଣ୍ଡଳରେ ସଭ୍ୟ ହୋଇଥିଲେ । ତାଙ୍କର ଅକ୍ଳାନ୍ତ ଉଦ୍ୟମ ଫଳରେ ଉତ୍କଳ ବିଶ୍ୱବିଦ୍ୟାଳୟ ପ୍ରତିଷ୍ଠା କରିହୋଇ ପାରିଥିଲା । ଗୋଦାବରୀଶଙ୍କ ହୃଦୟ ସବୁବେଳେ ବିଚ୍ଛିନ୍ନାଞ୍ଚଳ ଓଡ଼ିଆଙ୍କ ପାଇଁ କାନ୍ଦୁଥିଲା ।

ଗୋଦାବରୀଶ ଥିଲେ ଜଣେ ସୁସାହିତ୍ୟିକ । କଲେଜରେ ପାଠ ପଢ଼ୁଥିବା ସମୟରୁ ତାଙ୍କ କବିତା ଓଡ଼ିଶାର ପ୍ରସିଦ୍ଧ ପତ୍ରପତ୍ରିକାରେ ପ୍ରକାଶ ପାଇ ଆସୁଥିଲା । ସେ ବହୁତ କବିତା ଓ ପ୍ରବନ୍ଧ ଲେଖିଛନ୍ତି ।

୧୯୫୬ ମସିହା ଜୁଲାଇ ୨୬ ତାରିଖ ଦିନ ସେ ଇହଲୀଳା ସାଙ୍ଗ କରିଥିଲେ ।

## କୃପାସିନ୍ଧୁ ମିଶ୍ର

[ ଖ୍ରୀ: ୧୮୮୭ ରୁ ଖ୍ରୀ: ୧୯୨୭ ]

କୃପାସିନ୍ଧୁ ଥିଲେ ଜଣେ ମହାମନୀଷୀ । କିନ୍ତୁ ଅସମୟରେ ଓ ଅଳ୍ପ ବୟସରେ ମରିଯିବାରୁ ତାଙ୍କର କୃତିତ୍ୱ ବିଶେଷଭାବେ ଲୋକଲୋଚନକୁ ଆସିପାରିଲା ନାହିଁ । ତେବେ ସୁଦ୍ଧା ସେ ଯାହା କରିଛନ୍ତି, ସେଥିପାଇଁ ଓଡ଼ିଆ ଜାତି ତାଙ୍କୁ ଚିରକାଳ ମନେରଖିଥିବ ।

ପୁରୀ ଜିଲ୍ଲାର ବୀରହରେକୃଷ୍ଣପୁରରେ କୃପାସିନ୍ଧୁ ୧୮୮୭ ମସିହାରେ ଜନ୍ମଗ୍ରହଣ କରିଥିଲେ । ପିଲାଟି ଦିନରୁ ସେ ଥିଲେ ଜଣେ ଅତି ମେଧାବୀ ଛାତ୍ର । ସେ ଭର୍ଣ୍ଣାକୁଲାର ପାଶ୍ କରିବା ପରେ ପୁରୀ ଜିଲ୍ଲାସ୍କୁଲ ଓ ପରେ ରେଭେନ୍‌ସା କଲେଜିଏଟ୍ ସ୍କୁଲରେ ପଢ଼ି ଏନ୍‌ଟ୍ରାନ୍‌ସ୍ ପାଶ୍ କଲେ । କୃପାସିନ୍ଧୁ ପ୍ରଥମରୁ ହିଁ ବୃତ୍ତି ପାଇ ଆସୁଥିଲେ । ଏବେ ବୃତ୍ତି ପାଇ ୧୯୧୨ ମସିହାରେ ରେଭେନ୍‌ସା କଲେଜରୁ ଦର୍ଶନ ଶାସ୍ତ୍ର ଅନର୍ସ ସହିତ ବି.ଏ. ପାଶ କଲେ । ଏହାପରେ ସେ ଦର୍ଶନ ଶାସ୍ତ୍ରରେ ଏମ୍.ଏ. ପାଶ୍ କରି ୧୯୧୪ ମସିହାରେ ପଣ୍ଡିତ ଗୋପବନ୍ଧୁ ଦାସଙ୍କ ସହିତ ଯୋଗ ଦେଲେ ।



କୃପାସିନ୍ଧୁ ମିଶ୍ର

କୃପାସିନ୍ଧୁ ୧୯୧୪ ରୁ ୧୯୧୯ ପର୍ଯ୍ୟନ୍ତ ଗୋପବନ୍ଧୁଙ୍କ ସତ୍ୟବାଦୀ ବିଦ୍ୟାଳୟରେ ସହକାରୀ ଶିକ୍ଷକଭାବେ ଯୋଗ ଦେଇଥିଲେ । ୧୯୨୦ ରୁ ୧୯୨୭ ପର୍ଯ୍ୟନ୍ତ ପ୍ରଧାନ ଶିକ୍ଷକ ହୋଇଥିଲେ । ଏହି ସମୟରେ ଦେଶ ସ୍ୱାଧୀନ ପାଇଁ ଗଢ଼ା ହୋଇଥିବା କଂଗ୍ରେସର ପ୍ରଚାର କାର୍ଯ୍ୟ ସେ କରିଥିଲେ ।

କୃପାସିନ୍ଧୁଙ୍କ ପରିଚାଳନା ଓ ସଂଗଠନ ଶକ୍ତି ଥିଲା ଅଦ୍ଭୁତ । ଅତି ସରଳ ବ୍ୟବହାର ଦ୍ୱାରା ସେ ସାଧାରଣ ଲୋକଙ୍କ ମନ କିଣିନେଉଥିଲେ । ତାଙ୍କ ମନେରଖିବା ଶକ୍ତି ଥିଲା ଅସାଧାରଣ । ସେ ଥିଲେ ସାଧୁ, ସଚ୍ଚୋଟ ଏବଂ ଦୟାଳୁ ।

୧୯୨୧ ମସିହାରେ କୃପାସିନ୍ଧୁ ପୁରୀଜିଲ୍ଲା କଂଗ୍ରେସ କମିଟିର ପରିଚାଳକ ଥିଲେ । ୧୯୨୪ ରୁ ଶେଷପର୍ଯ୍ୟନ୍ତ ପୁରୀ ଜିଲ୍ଲାବୋର୍ଡର ସଭ୍ୟ ଥିଲେ । ସେ ଆହୁରି ଉଚ୍ଚକୁ ଯାଇ ଜଣେ ଯଥାର୍ଥ ନେତା ହୋଇପାରିଥାଆନ୍ତେ । ମାତ୍ର ୧୯୨୭ ମସିହା ଫେବୃଆରୀ ମାସ ୧୨ ତାରିଖ ଦିନ ସେ ଇହଧାମ ତ୍ୟାଗ କରି ସମସ୍ତ ଓଡ଼ିଆ ଜାତିକୁ ଶୋକ-ସାଗରରେ ଭସାଇ ଦେଇଥିଲେ ।

# ସାରଙ୍ଗଧର ଦାସ

[ ଖ୍ରୀ: ୧୮୮୭ ରୁ ଖ୍ରୀ: ୧୯୫୭ ]

ଓଡ଼ିଶା ଗଡ଼ଜାତ ସମ୍ମିଳନୀର କର୍ତ୍ତା ହେଉଛନ୍ତି ସାରଙ୍ଗଧର ଦାସ । ସେ ୧୮୮୭ ମସିହାରେ ଢେଙ୍କାନାଳ ଜିଲ୍ଲାରେ ଥିବା ହରେକୃଷ୍ଣପୁର ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ସେ ଯେତେବେଳେ ଏନ୍ ଟ୍ରାନ୍ସ ପାଠ ପଢ଼ୁଥିଲେ ସେତେବେଳେ ଉତ୍କଳ ସମ୍ମିଳନୀର ଡାକରାରେ ଉଦ୍‌ବୁଦ୍ଧ ହୋଇ ଜାତୀୟ ମନୋବୃତ୍ତି ଗ୍ରହଣ କରିଥିଲେ ।

ସାରଙ୍ଗଧର ବି.ଏ. ପାଶ୍ କରିବା ପରେ ପରେ ଉଚ୍ଚ ଚାକିରୀ ପାଇଥିଲେ । ମାତ୍ର ଢେଙ୍କାନାଳ ରାଜାଙ୍କ ବ୍ୟକ୍ତିଗତ ଆର୍ଥିକ ସାହାଯ୍ୟ ପାଇ ଜାପାନକୁ ଯାଇ ବିଜ୍ଞାନ ଓ ବୈଷୟିକ ଶିକ୍ଷା ଗ୍ରହଣ କଲେ । ୧୯୦୭ ରୁ ୧୯୦୯ ପର୍ଯ୍ୟନ୍ତ ସେ ଜାପାନରେ ଏବଂ ଏହା ପରେ ଆମେରିକାରେ ରସାୟନ ବିଦ୍ୟା ପାଠକଲେ ।

ଆମେରିକାରେ ରସାୟନ ଓ କୃଷି ବିଦ୍ୟାରେ ଡିଗ୍ରୀ ହାସଲ କରିବା ପରେ ସେ ହାଓ୍ୱାଇର ଏକ ଚିନି କାରଖାନାର ମୁଖ୍ୟ ରସାୟନବିଦ୍ ଭାବେ କାମ କରିଥିଲେ । ସେଠାରେ ସେ ଫ୍ରେଡ଼ା ନାମକ ଜଣେ ଆମେରିକୀୟ ଯୁବତୀଙ୍କୁ ବିବାହ କରିଥିଲେ ।



ସାରଙ୍ଗଧର ଦାସ

ସାରଙ୍ଗଧର ଚିରଦିନ ଆମେରିକାରେ ରହିବେ ବୋଲି ମନେ ମନେ ସ୍ଥିର କରିଥିଲେ । ମାତ୍ର ଫ୍ରେଡ଼ା ତାଙ୍କୁ କହିଥିଲେ, "ଆମେରିକାରୁ ଯେଉଁ ଜ୍ଞାନ ଆହରଣ କରିଛ, ଅନୁନ୍ନତ ମାତୃଭୂମିର ବିକାଶ ନିମନ୍ତେ ତାହା ବ୍ୟବହାର କରିପାରିଲେ ଶିକ୍ଷାର ସଦୁପୋ-ଯୋଗ ହୋଇଛି ବୋଲି ଜଣାଯିବ ।"

ଏଥର ସାରଙ୍ଗଧର ଭାରତକୁ ଫେରିଲେ । ଏହାପରେ ସେ ଗୋରଖପୁର, ଏର୍ଣ୍ଣାକୁଲମ ଆଦି ବୃହତ୍ ଚିନି କଳରେ ମୋଟା ଦରମାରେ କାମ କରିଥିଲେ ।

ପରିଶେଷରେ ସେ ଢେଙ୍କାନାଳରେ ଗୋଟିଏ ଚିନି କାରଖାନା ବସାଇବା ଉଦ୍ଦେଶ୍ୟରେ ଫେରିଥିଲେ । ଚିନି କାରଖାନା ବସାଇବା ପାଇଁ ସମସ୍ତ ପ୍ରକାର ବ୍ୟବସ୍ଥା ହୋଇ ଯାଇଥିଲା । ମାତ୍ର ଠିକ୍ ସେହି ସମୟରେ ଢେଙ୍କାନାଳର ନୂଆ ରାଜା ତାଙ୍କ ରାଜ୍ୟର ରାଜନୀତିରେ ସାରଙ୍ଗଧର ହସ୍ତକ୍ଷେପ କରୁଥିବା ସନ୍ଦେହ କଲେ । ଏବଂ ତାଙ୍କର ସମସ୍ତ ସମ୍ପତ୍ତି, କାଗଜପତ୍ର ଓ କଳ କବ୍ଜା ଜବତ କରିଦେଲେ ।

ଏହା ସାରଙ୍ଗଧରଙ୍କ ଜୀବନରେ ପରିବର୍ତ୍ତନ ଆଣିଲା । ଏଥର ସେ ରାଜନୀତିରେ ପଶିଲେ । ଏହା ହେଉଛି ୧୯୩୪ ମସିହା କଥା । ସେ କଟକର ବାଖରାବାଦରେ ରହିଲେ । ପ୍ରତ୍ୟହ ଶହ ଶହ ଚିଠି ଲେଖି ସେ ପ୍ରଜା ଆନ୍ଦୋଳନ ମତାଇବାରେ ଲାଗିଲେ । ୧୯୩୭ ମସିହାରେ ପଟ୍ଟାଭି ସୀତାରାମାୟାଙ୍କ ନେତୃତ୍ୱରେ ପ୍ରଜା-ସମ୍ମିଳନୀ ହୋଇଥିଲା । ସାରଙ୍ଗଧର ଏହାର ସମ୍ପାଦକ ହେଲେ ।

ଓଡ଼ିଶାରେ ଜୋରସୋରରେ ପ୍ରଜା ଆନ୍ଦୋଳନ ଚାଲିଥିବା ବେଳେ ଭାରତରେ ଅସହଯୋଗ ଆନ୍ଦୋଳନ ବ୍ୟାପକ ହୋଇଥିଲା । ଇଂରେଜମାନେ ସାରଙ୍ଗଧରଙ୍କୁ ବନ୍ଦୀ କରିଥିଲେ । ସାରଙ୍ଗଧର ୧୯୪୨ ରୁ ୪୭ ପର୍ଯ୍ୟନ୍ତ ବ୍ରହ୍ମପୁର ଜେଲରେ ରହିଥିଲେ ।

୧୯୪୭ରେ ଇଂରେଜ ଓ ରାଜାମାନଙ୍କ ଶାସନ ଗଲା । ସେତେବେଳେ ସାରଙ୍ଗଧର ଓଡ଼ିଶା ଶାସନ-ବିଧାୟକ-ସଭାର ସଭ୍ୟ ହେଲେ । ଜାତୀୟ-କଂଗ୍ରେସର ରାଜୁତି ଚାଲିଲା । ତେବେ ସୁଦ୍ଧା ଲୋକଙ୍କ ଦୁଃଖ-ଦୁର୍ଦ୍ଦଶା ଦୂର ହେଲାନାହିଁ । ଏହା ଦେଖି ସାରଙ୍ଗଧର କଂଗ୍ରେସ ତ୍ୟାଗ କରି ସୋସାଲିଷ୍ଟ ଦଳରେ ଯୋଗ ଦେଲେ । ୧୯୫୨ରେ ସେ ଏହି ଦଳ ପକ୍ଷରୁ ଲୋକସଭା ସଭ୍ୟ ଭାବେ ନିର୍ବାଚିତ ହେଲେ ।

ଜଣେ ସଚ୍ଚୋଟ ଓ ସାଧୁଲୋକ ହିସାବରେ ସାରଙ୍ଗଧର ସୁପରିଚିତ ଥିଲେ । ସେ ଓଡ଼ିଶାର ବିଚ୍ଛିନ୍ନାଞ୍ଚଳ ପାଇଁ ବିଶେଷ ବ୍ୟାକୁଳ ଥିଲେ । ଏପରିକି ୧୯୫୨ ମସିହା ସୀମା-ଆନ୍ଦୋଳନ ସମୟରେ, ତାଙ୍କର ଅତି ବାର୍ଦ୍ଧକ୍ୟ ସମୟରେ ସୁଦ୍ଧା ସେ ଆଇନ୍ ଅମାନ୍ୟକରି ଜେଲକୁ ଯାଇଥିଲେ । କିନ୍ତୁ ୧୯୫୭ ମସିହାରେ ସେ ଇହଲୀଳା ସାଙ୍ଗ କରି ଦେଲେ । ସେ ତାଙ୍କର ସମସ୍ତ ସମ୍ପତ୍ତିକୁ ସମାଜବାଦୀ ଆନ୍ଦୋଳନର ପ୍ରସାର ନିମନ୍ତେ ଦାନ କରିଦେଇ ଯାଇଛନ୍ତି ।

## ସୁଭାଷ ଚନ୍ଦ୍ର ବୋଷ

[ ଖ୍ରୀ: ୧୮୯୭ ରୁ ଖ୍ରୀ: ୧୯୪୫ ]

ଓଡ଼ିଶାରେ ଜନ୍ମ ହୋଇ ଜାତୀୟ ଓ ଆନ୍ତର୍ଜାତିକ ମହଲରେ ସୁପରିଚିତ ହୋଇଥିବା ଶ୍ରେଷ୍ଠତମ ବିପ୍ଳବୀ ହେଉଛନ୍ତି ସୁଭାଷ ଚନ୍ଦ୍ର ବୋଷ । ସେ କଟକର ଓଡ଼ିଆ ବଜାରରେ ୧୮୯୭ ମସିହାରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଜାନକୀନାଥ ବୋଷ ।

ସୁଭାଷ କଲେଜିଏଟ୍ ସ୍କୁଲରୁ ମେଟ୍ରିକ ପାଶ୍ କରିବା ପରେ କଲକତାରେ ବି.ଏ. ପାଶ୍ କରିଥିଲେ । ଏହା ପରେ ସେ ବିଲାତ ଯାଇ ଆଇ. ସି. ଏସ୍. ପରୀକ୍ଷାରେ ମଧ୍ୟ କୃତିତ୍ୱ ଦେଖାଇଥିଲେ । ସେ ଯେତେବେଳେ ଇଚ୍ଛା କରିଥିଲେ ମୋଟା ଦରମାରେ ସରକାରୀ ଚାକିରୀ କରିପାରି ଥାଆନ୍ତେ । ମାତ୍ର ଜାତି ପ୍ରାଣ ସୁଭାଷ ତାହା ନ କରି ଭାରତ ମୁକ୍ତି ସଂଗ୍ରାମରେ ଯୋଗ ଦେଇଥିଲେ ।

ସୁଭାଷ ପିଲାଟି ଦିନରୁ ଦୁଃଖୀ ରଙ୍କୀଙ୍କ ସେବା କରିବାରେ ଖୁବ୍ ଆନନ୍ଦ ପାଉଥିଲେ । ସେ ସମୟରେ ଯେତେ ଯେତେ ମଡ଼କ ଓ ବନ୍ୟା ହେଉଥିଲା ସୁଭାଷ ଜନସେବା କରି ଖ୍ୟାତି ଅର୍ଜନ କରିଥିଲେ ।

ଇଂରେଜଙ୍କୁ ଦେଶରୁ ହଟାଇବା ପାଇଁ ମହାତ୍ମା ଗାନ୍ଧି ଅସହଯୋଗ ଆନ୍ଦୋଳନ ଆରମ୍ଭ କରିଦେଇଥିଲେ । ସେହି ଆନ୍ଦୋଳନରେ ସୁଭାଷ ଯୋଗ ଦେଇ ଜାତୀୟ କଂଗ୍ରେସର ମୁଖ୍ୟ କର୍ମକର୍ତ୍ତା ହୋଇଥିଲେ । କିନ୍ତୁ ଅହିଂସା ଆନ୍ଦୋଳନରେ ଶୀଘ୍ର ସ୍ୱାଧୀନତା ପାଇବା ସହଜ ନୁହେଁ ବୋଲି ଭାବି ସେ କଂଗ୍ରେସ ତ୍ୟାଗ କରିଥିଲେ ।

ସୁଭାଷ ଯୁଦ୍ଧ କରି ଇଂରେଜଙ୍କୁ ଭାରତରୁ ହଟାଇବାର ସ୍ୱପ୍ନ ଦେଖିଥିଲେ । ଦ୍ୱିତୀୟ ମହାଯୁଦ୍ଧ ସମୟରେ ଇଂରେଜ ସରକାର ସୁଭାଷଙ୍କୁ ଅଟକବନ୍ଦୀ କରି ରଖିଥିଲେ । କିନ୍ତୁ ସୁଭାଷ ଅଦ୍ଭୁତ ଉପାୟରେ ଭାରତରୁ ଖସି ପଳାଇଥିଲେ



[ସୁଭାଷ ବୋଷ]

ଜର୍ମାନୀକୁ । ଏବଂ ସେଠାରେ ଜର୍ମାନ ସରକାରଙ୍କ ସହାୟତାରେ ଜାପାନକୁ ଆସି ଜାପାନରୁ ଇଣ୍ଡୋଚାଇନାକୁ ପଳାଇ ଆସିଥିଲେ । ଏହି ଇଣ୍ଡୋଚୀନରେ ସେ ଗଢ଼ିଲେ ତାଙ୍କର ଅଜାଦ୍-ହିନ୍ଦ-ଫୌଜ ।

ଭାରତର ଉତ୍ତର ପୂର୍ବାଞ୍ଚଳରୁ ବୀର ଦର୍ପରେ ସୁଭାଷଙ୍କ 'ଜୟହିନ୍ଦ' ଧ୍ୱନି ଶୁଣାଗଲା । ଅଜାଦ ହିନ୍ଦ ଫୌଜ ମଣିପୁର, କୋହିମା ଆଦି ଗୋଟିଏ ଗୋଟିଏ ସ୍ଥାନରୁ ଇଂରେଜଙ୍କୁ ହଟାଇ ଆଣୁଥିବା ସମୟରେ ହଠାତ୍ ବିଶ୍ୱଯୁଦ୍ଧ ବନ୍ଦ ହୋଇଗଲା । ଏବଂ ଜାପାନ ଆତ୍ମସମର୍ପଣ କଲା । ଫଳରେ ଜାପାନର ସାମରିକ ସାହାଯ୍ୟ ସୁଭାଷ ପାଇବା ଆଉ ସମ୍ଭବ ହୋଇପାରି ନ ଥିଲା । ଏ ସଂକ୍ରାନ୍ତରେ ଅଧିକ ଆଲୋଚନା କରିବା ପାଇଁ ସୁଭାଷ ଉଡ଼ାଜାହାଜ ଯୋଗେ ଜାପାନ ଯାଉଥିବା ସମୟରେ ଆକସ୍ମିକ ଦୁର୍ଘଟଣାରେ ସେ ପ୍ରାଣ ହରାଇଥିବା ଶୁଣାଯାଏ ।

ସୁଭାଷ ଅଳ୍ପଦିନ ଭିତରେ ଯେଉଁ ସବୁ ଅଦ୍ଭୁତ କର୍ମ କରିଯାଇଛନ୍ତି, ସେଥିପାଇଁ ସେ ଜାତୀୟ ନେତାଜୀ ଭାବେ ପରିଚିତ । ସୁଭାଷଙ୍କ ବିଜୟ ଧ୍ୱନି 'ଜୟହିନ୍ଦ' ଏବେ ମଧ୍ୟ ବହୁଳ ଭାବରେ ବ୍ୟବହୃତ ହେଉଛି ।

## ଗୋପବନ୍ଧୁ ଚୌଧୁରୀ

(ଖ୍ରୀ: ୧୮୯୪—ଖ୍ରୀ: ୧୯୫୮ )

ଗୋପବନ୍ଧୁ ଚୌଧୁରୀ ହେଉଛନ୍ତି ଓଡ଼ିଶାର ବିଶିଷ୍ଟ ସ୍ୱାଧୀନତା ସଂଗ୍ରାମୀ । ସେ ୧୮୯୪ ମସିହାରେ କଟକ ଜିଲ୍ଲାର ଖେରସା ଗ୍ରାମରେ ଜନ୍ମ ଗ୍ରହଣ କରିଥିଲେ । ତାଙ୍କ ପିତାଙ୍କ ନାମ ଗୋକୁଳାନନ୍ଦ ଚୌଧୁରୀ ଓ ମାତାଙ୍କ ନାମ ପଦ୍ମାବତୀ ଦେଈ ।

ପ୍ରାଥମିକ ଶିକ୍ଷା ସମାପ୍ତ କରି ସେ କଲିକତାରେ ଏମ୍. ଏ. ପାଶ କରିଥିଲେ । ଏମ୍. ଏ. ପାଶ୍ କରିବା ପରେ ସେ ଇଂରେଜ ସରକାରଙ୍କ ଅଧୀନରେ କିଛି ଦିନ ଡେପୁଟି କଲେକ୍ଟର ଚାକିରି କରିଥିଲେ ।

ସେତେବେଳେ ମହାତ୍ମା ଗାନ୍ଧିଙ୍କ ଅସହଯୋଗ ଆନ୍ଦୋଳନ ବାର୍ତ୍ତା ସାରା ଭାରତରେ ପ୍ରଚାରିତ ହୋଇଯାଇଥିଲା । ଭାରତୀୟ ଯୁବକମାନେ ଏହି ପ୍ରଚାର ଦ୍ୱାରା ଗଭୀର ଭାବେ ପ୍ରଭାବିତ ହୋଇଯାଇଥିଲେ । ଗୋପବନ୍ଧୁ ଚୌଧୁରୀ ସରକାରୀ ଚାକିରି ଛାଡ଼ି ଜାତି ଓ ଦେଶର ସେବା ନିମନ୍ତେ ଅସହଯୋଗ ଆନ୍ଦୋଳନରେ ଯୋଗ ଦେଲେ । ସେ ଏକାଧିକ ବାର ଜେଲ ବରଣ କରିଥିଲେ ।



ଗୋପବନ୍ଧୁ ଚୌଧୁରୀ

ଗୋପବନ୍ଧୁ କଟକ ଜିଲ୍ଲାବୋର୍ଡରେ କିଛି ଦିନ ଚେୟାରମ୍ୟାନ୍ ହୋଇଥିଲେ । ଏହି ସମୟରେ ସେ ଖୁବ୍ ସୁନାମ ଅର୍ଜନ କରିଥିଲେ । ଗୋପବନ୍ଧୁ ଥିଲେ ଅତି ଅମାୟିକ ଓ ସରଳ ଲୋକ । ସେ ଅତି ନିରାଡ଼ମ୍ବର ଜୀବନ ଯାପନ କରୁଥିଲେ । ଓଡ଼ିଶାର ଗରିବ ଓଡ଼ିଆଙ୍କ ପାଇଁ ବହୁତ ସଂଗଠନ ମୂଳକ କାର୍ଯ୍ୟ କରିଥିଲେ । ନିଷ୍ଠାପର କର୍ମୀ ଗୋପବନ୍ଧୁଙ୍କ ପତ୍ନୀ ରମାଦେବୀ ପରବର୍ତ୍ତୀ କାଳରେ ଜଣେ ସୁଯୋଗ୍ୟା ନାରୀନେତ୍ରୀ ହୋଇଥିଲେ ।

ଗୋପବନ୍ଧୁ ୧୯୫୮ ମସିହାରେ ଇହଧାମ ତ୍ୟାଗ କରିଥିଲେ ।

## କୁନ୍ତଳା କୁମାରୀ ସାବତ

[୧୯୦୧ ରୁ ୧୯୩୮]

କୁନ୍ତଳା କୁମାରୀ ଜଣେ ଲେଖିକା ଓ କବି ଭାବରେ ଓଡ଼ିଆଙ୍କ ଘରେ ଘରେ ପରିଚିତା । କିନ୍ତୁ ଓଡ଼ିଶା ମିଶ୍ରଣ ପାଇଁ ଓଡ଼ିଶା ବାହାରେ ଦିଲ୍ଲୀଠାରେ ଯେଉଁ ପ୍ରବାସୀ ଉତ୍କଳ ସମ୍ମିଳନୀ ଥିଲା, ୧୯୨୯ ମସିହାରେ ସେ ଏହାର ସଭାନେତ୍ରୀ ହୋଇଥିଲେ । କୁନ୍ତଳା "ଆହ୍ୱାନ" ନାମକ ଏକ ଦେଶାତ୍ମ ବୋଧକ ପୁସ୍ତକ ଲେଖିଥିଲେ । ସେତେବେଳେ ଏହି ପୁସ୍ତକ ଓଡ଼ିଶାରେ ଘୋର ଆଲୋଡ଼ନ ସୃଷ୍ଟି କରିଥିଲା । ଏହି ପୁସ୍ତକକୁ ଇଂରେଜ ସରକାର ବାଜ୍ୟାପ୍ତ କରିଥିଲେ ।

କୁନ୍ତଳା ୧୯୦୧ ମସିହାରେ ଜଗଦଲପୁର ଠାରେ ଜନ୍ମ ହୋଇଥିଲେ । ତାଙ୍କ ପିତାଙ୍କ ନାମ ଡାକ୍ତର ଦାନିଏଲ ସାବତ ଓ ମାତାଙ୍କ ନାମ ମଣିକା ସାବତ । ବସ୍ତର ଷ୍ଟେଟ୍‌ର ସରକାରୀ ଡାକ୍ତର ଭାବେ ତାଙ୍କ ପିତା ଜଗଦଲପୁର ଠାରେ ରହୁଥିଲେ । ହେଲେ ଦାନିଏଲଙ୍କ ଜନ୍ମସ୍ଥାନ ହେଉଛି କଟକ ଜିଲ୍ଲାର ଜମ୍ବୁ ଗ୍ରାମ ।



କୁନ୍ତଳାକୁମାରୀ ସାବତ

କୁନ୍ତଳା ମାତାଙ୍କଠାରୁ ଓଡ଼ିଆ ଓ ପିତାଙ୍କଠାରୁ ଇଂରାଜୀ ଶିକ୍ଷା କରିଥିଲେ । ତାଙ୍କର ପିଲାଦିନ ବର୍ମାରେ କଟିଥିଲା । କାରଣ ବାପାଏଲ ସେତେବେଳେ ବର୍ମାକୁ ଚାଲି-ଯାଇଥିଲେ । ଏହାପରେ ସେ କଟକସ୍ଥ ରେଭେନ୍‌ସା ବାଳିକା ବିଦ୍ୟାଳୟରେ ହାଇସ୍କୁଲ ପାଠ ପଢ଼ିଥିଲେ । ସେ ୧୯୨୧ ମସିହାରେ ଡାକ୍ତରୀ ପରୀକ୍ଷା ଦେଇ ଏଲ୍. ଏମ୍. ପିରେ ସମଗ୍ର ଓଡ଼ିଶାରେ ପ୍ରଥମ ହୋଇଥିଲେ ।

କୁନ୍ତଳାଙ୍କ ଅତ୍ୟଧିକ ପ୍ରେମ ଥିଲା ଓଡ଼ିଆ ସାହିତ୍ୟ ପ୍ରତି । ସେ ବହୁ କବିତା ଲେଖି ନାରୀକବି ଉପାଧି ପାଇଥିଲେ । ଓଡ଼ିଆ ଭାଷାରେ ଅଗାଧ ପାଣ୍ଡିତ୍ୟ ଅଭ ଲକ୍ଷ୍ୟ ଦେଖି ପୁରୀର ମୁକ୍ତିମଣ୍ଡପ ତାଙ୍କୁ 'ଉତ୍କଳ-ଭାରତୀ' ଉପାଧି ଦେଇଥିଲେ । ସେ ଅଖିଳ ଭାରତ ଆର୍ଯ୍ୟ ସମାଜରୁ 'ଭାରତୀ-ଭୂଷଣ' ଉପାଧି ମଧ୍ୟ ପାଇଥିଲେ ।

କୁନ୍ତଳା ତାଙ୍କର ଜୀବନର ଶ୍ରେଷ୍ଠ ସମୟ ଦିଲ୍ଲୀରେ କଟାଇଥିଲେ । ସେତେବେଳେ ମହାତ୍ମା ଗାନ୍ଧୀଙ୍କ ଅସହଯୋଗ ଆନ୍ଦୋଳନ ତାଙ୍କ ଉପରେ ଖୁବ୍ ପ୍ରଭାବ ପକାଇଥିଲା । ନିଜେ ଜଣେ ସକ୍ରିୟ ନେତ୍ରୀ ହୋଇ ନଥିଲେ ସୁଦ୍ଧା ସେ ଆଜୀବନ ହାତବୁଣା ଖଦଡ଼ ଶାଢ଼ୀ ପିନ୍ଧୁଥିଲେ । ଓଡ଼ିଶା ଦେଶ ମିଶ୍ରଣ ପାଇଁ ସେ ଦିଲ୍ଲୀଠାରେ ପ୍ରଚାର କରୁଥିଲେ । ଏବଂ ୧୯୨୯ରେ ପ୍ରବାସୀ ଉତ୍କଳ-ସମ୍ମିଳନୀର ସଭା ନେତ୍ରୀ ହୋଇଥିଲେ ।

କୁନ୍ତଳା ଖ୍ରୀଷ୍ଟାନ ରୂପେ ଜନ୍ମ ହୋଇ-ଥିଲେ । ପରେ ସେ ବ୍ରାହ୍ମ ଧର୍ମ ଗ୍ରହଣ କରିଥିଲେ । ଏହାପରେ ସେ ଦିଲ୍ଲୀ ଆର୍ଯ୍ୟ-ସମାଜରେ ପ୍ରବେଶ କଲେ । ସେତେବେଳେ ସେ ବିବାହ କରିଥିଲେ କୃଷ୍ଣ ପ୍ରସାଦ ବ୍ରହ୍ମଚାରୀଙ୍କୁ । କୃଷ୍ଣ ପ୍ରସାଦ ଥିଲେ ଓଡ଼ିଆ । କେତେଦିନ ଯିବା ପରେ ସେ ପୁନର୍ବାର ହିନ୍ଦୁ ହୋଇଯାଇଥିଲେ । ସେ ଶ୍ରୀ ଶ୍ରୀ ଜଗନ୍ନାଥଙ୍କୁ ଅତି ଭକ୍ତି ସହକାରେ ପୂଜା କରୁଥିଲେ ।

●

ମୁଦ୍ରାକର
ଶ୍ରୀ ଗାୟତ୍ରୀ ପ୍ରିଣ୍ଟୋଗ୍ରାଫସ୍ , ଝିଙ୍କାଣି